# ପ୍ରିୟ ଗଣକ
# PRIYA GANAKA

ଫିଚର୍ ସଂକଳନ
(Compilation of feature articles)

ଲେଖକ : ମନୁ ଦାଶ
by Manu Dash

ପ୍ରଥମ ପ୍ରକାଶ :
୨୩.୦୬.୨୦୦୧, ଶ୍ରୀ ଗୁଣ୍ଡିଚା
First Published :
23.06.2001, Sri Gundicha

ପ୍ରଚ୍ଛଦ :
ଜ୍ୟୋତିରଂଜନ ସ୍ୱାଇଁ
ଥାର୍ଡ଼ ଆଇ କମ୍ୟୁନିକେଶନ, ଭୁବନେଶ୍ୱର
**Cover :**
Jyotiranjan Swain
Third Eye Communication, BBSR

ଲକି ପବ୍ଲିକେସନ୍ସ, ବ୍ରହ୍ମପୁର - ୮
Lucky Publications, Berhampur - 8

ମୂଲ୍ୟ : ଟ ୫୦ ଙ୍କା (ବନ୍ଧେଇ ସହ)
**Price :** Rs.50/- (with binding)

ମୁଦ୍ରଣ : ଲକି ଅଫ୍‌ସେଟ୍,ବ୍ରହ୍ମପୁର-୮
**Printed at** : Lucky Offset Pvt. Ltd. Bam-8

# କୃତଜ୍ଞତା

ଦୈନିକ 'ଅନୁପମ ଭାରତ'ର 'ସମୟ ସ୍ରୋତରେ' ସ୍ତମ୍ଭରେ ଏବଂ ଦୈନିକ 'ଧରିତ୍ରୀ'ରେ ଏ ସବୁ ଲେଖା ବିଭିନ୍ନ ସମୟରେ ଛାପିତ ହୋଇଛି ।

'ଅନୁପମ ଭାରତ'ର ପ୍ରତିଷ୍ଠାତା ଶ୍ରୀ କାଳି ଚରଣ ପଣ୍ଡା ଏବଂ ସଂପାଦକ ଶ୍ରୀ ଶରତ ମିଶ୍ରଙ୍କୁ କୃତଜ୍ଞତାର ସହ ସ୍ମରଣ କରୁଛି । 'ଧରିତ୍ରୀ'ର ସମ୍ପାଦକଙ୍କୁ ମଧ୍ୟ ଧନ୍ୟବାଦ ।

| ବିଷୟ ସୂଚୀ | | ପୃଷ୍ଠା |
| --- | --- | --- |

# ଲାଟୁର୍

ରାସ୍ତାରେ ଯାଉଯାଉ ହଠାତ୍ ଲୋକଟି ଗୋଟେ ଲଣ୍ଡା କୂଅ ଭିତରେ ଖସିପଡ଼ିଲା । ବିକଳ ହୋଇ ଚିତ୍କାର କରୁଥାଏ ପ୍ରାଣରକ୍ଷା ପାଇଁ । ସେଇ ବାଟ ଦେଇ ଯାଉଥିଲେ ବୌଦ୍ଧ ଧର୍ମାବଲମ୍ବୀ ଭିକ୍ଷୁ । ଲୋକଟିର ଚିତ୍କାର ଶୁଣି ସେ କୂଅ ଭିତରକୁ ଚାହିଁଲେ । ଲୋକଟି ପାଣି ଭିତରେ ଉବୁଟୁବୁ ହୋଇ ସାହାଯ୍ୟ ପାଇବା ପାଇଁ ଚିତ୍କାର କରୁଥାଏ ।

: ଦୟା କରି, ମୋତେ ବଞ୍ଚାଅ ।'

: ମାତ୍ର ବଞ୍ଚିକି କରିବ କ'ଣ ? ଏ ଜୀବନଟାତ ଗୋଟେ ମାୟା । ଏଠି କେବଳ ଜରା, ଯନ୍ତ୍ରଣା ଆଉ ମୃତ୍ୟୁ । ମୃତ୍ୟୁ ଯେତେବେଳେ ସାମ୍ନାରେ, ତାକୁ ବରଂ ସ୍ୱାଗତ କର । କହି ଚାଲିଲେ ବୌଦ୍ଧ ଭିକ୍ଷୁ ।

: 'ମୁଁ ବଞ୍ଚିଲେ ଆପଣଙ୍କ ଋଣ ଶୁଝିଦେବି ନିଶ୍ଚୟ ।' କହିଲା ଲୋକଟି ।

ବୌଦ୍ଧ ଭିକ୍ଷୁ ତା' କଥା ଶୁଣି ଓଠରେ ସ୍ମିତହସ ଖେଳାଇ କହିଲେ,

: 'ମୋ ପାଖରୁ ଋଣମୁକ୍ତ ହେବା କଥା ଭୁଲିଯାଅ । ଯଦି ଏବେ ମୁଁ ତମ ପ୍ରାଣରକ୍ଷା କରେ ଆଉ ଭବିଷ୍ୟତରେ ତୁମେ ଯାହାଯାହା ପାପ ସବୁ କରି ବସିବ-ସେ ସବୁର ତ ଅଧା ଭାଗିଦାର ନିଜେ ମୁଁ ହିଁ ହେବି ।' କହୁକହୁ ବୌଦ୍ଧଭିକ୍ଷୁ ସେଠୁ ବିଦାୟ ନେଲେ ।

କିଛି ସମୟ ପରେ ସେଇ ବାଟରେ ଯାଉଥା'ନ୍ତି କନ୍‌ଫୁସିୟସ୍‌ଙ୍କର ଜଣେ ଶିଷ୍ୟ । ଲୋକଟିର ଚିତ୍କାର ଶୁଣି ସେ ସେଠି ଅଟକିଗଲେ । ଅନୁସନ୍ଧାନ ପରେ ଯେତେବେଳେ ସେ ଲୋକଟିର ଦୁର୍ଦ୍ଦଶା କଥା ଶୁଣିଲେ, ରାଗରେ ତାଙ୍କ ଶରୀର କମ୍ପି ଉଠିଲା, ସେ କହିଲେ :

: ତୁମର ଏ ଦୁର୍ଦ୍ଦଶା ପାଇଁ ରାଷ୍ଟ୍ରର ଅବହେଳା ହିଁ ଦାୟୀ ।'

: ମୋତେ ଜଲ୍‌ଦି ବଞ୍ଚାନ୍ତୁ ଆଜ୍ଞା । ଲୋକଟି ବିକଳ ହୋଇ କହିଲା,

: କୂଅ ଯେତେବେଳେ ତିଆରି କରିଛନ୍ତି, ତା'ର ଫନ୍ଦ (ଭୂମି ଉପରକୁ କିଛି ଉଚ୍ଚତା) ମଧ୍ୟ ନିର୍ମାଣ କରିବା କଥା । ତା' ନହେବାରୁ ତୁମେ ଏବେ ସେ ଦୁର୍ଘଟଣାର ଶିକାର ହୋଇ ମରିବାକୁ ଯାଉଛ ।' ଶିଷ୍ୟ ଜଣକ କହି ଚାଲିଥା'ନ୍ତି ।

: ମୁଁ କିନ୍ତୁ ବଞ୍ଚିବାକୁ ଚାହେଁ ।'

: ନା, ତୁମେ ମରିବା ଦରକାର । କାରଣ, ତୁମେ ମରିବା ପରେ ଏଇ ଦୁର୍ଘଟଣାକୁ ଆଳ କରି ମୁଁ ରାଷ୍ଟ୍ରରେ ବିପ୍ଳବର ବୀଜବପନ କରିବି ।' କହୁକହୁ କନ୍‌ଫୁସିୟସ୍‌ଙ୍କ ଶିଷ୍ୟ ଚାଲିଗଲେ ।

ଅଳ୍ପ ମୁହୂର୍ତ୍ତ ପରେ ସେଇ ବାଟ ଦେଇ ଯାଉଥିଲେ ଇସାଇ ଧର୍ମାବଲମ୍ବୀ ଜଣେ ପାଦ୍ରୀ । ଲୋକଟିର ଆର୍ତ୍ତନାଦ ଶୁଣି ସେ କୂଅ ପାଖକୁ ଆସିଲେ । ସଦାସର୍ବଦା ହାତରେ ଗୋଟେ ଦଉଡ଼ି ଧରି ସେ ଚାଲିଥା'ନ୍ତି । ତେଣୁ ଅନାୟାସରେ ସେ ଲୋକଟିକୁ ମୃତ୍ୟୁ ମୁଖରୁ ଉଦ୍ଧାର କଲେ ।

ସବୁଠାରୁ ଆଶ୍ଚର୍ଯ୍ୟ କଥା ଯେ ଲୋକଟି ଉଦ୍ଧାର ପାଇବା ପରେ ପାଦ୍ରୀଙ୍କୁ କୃତଜ୍ଞତାସୂଚକ ଧନ୍ୟବାଦଟିଏ ମଧ ଦେଲା ନାହିଁ । ପ୍ରକାରାନ୍ତରେ କହିଲା ଯେ ସେ ତା'ର ନିଜ ଭାଗ୍ୟ ବଳରୁ ହିଁ ଏ ବିପତ୍ତିରୁ ଉଦ୍ଧାର ପାଇଛି । ପୁନର୍ବାର ତା'ର ଯୁକ୍ତି ଥିଲା,

: ତିନିଜଣଯାକ ହିଁ ଥିଲେ ସ୍ୱାର୍ଥପର । କାରଣ ବୌଦ୍ଧଭିକ୍ଷୁ ଓ କନ୍‌ଫୁସିୟସ୍‌ଙ୍କ ଶିଷ୍ୟ ନିଜନିଜ ସ୍ୱାର୍ଥ କଥା ପ୍ରକାଶ କରିଥିଲେ । ମାତ୍ର ପାଦ୍ରୀ ହାତରେ ଦଉଡ଼ି ଧରି ବୁଲୁଥିଲେ ଏବଂ ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ ଲୋକେ ସବୁବେଳେ କୂଅରେ ପଡ଼ନ୍ତୁ ଏବଂ ସେମାନଙ୍କୁ ଉଦ୍ଧାର କରି ସେ ପୁଣ୍ୟ ଅର୍ଜ୍ଜନ କରନ୍ତୁ ।

ଅବଶ୍ୟ ବୁଡ଼ି ଯାଉଥିବା ଲୋକଟିର ଯୁକ୍ତିକୁ ଅନୁଶୀଳନ କଲେ ଯେ କେହି ଭାଗ୍ୟ ଉପରେ ଆସ୍ଥା ପ୍ରକଟ କରି ବସିବ । ସେଇଥିପାଇଁ ଥରେ ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ଚର୍ଚ୍ଚିଲ କହିଥିଲେ : ମୋତେ ଲାଗେ ମୁଁ ଭାଗ୍ୟର ନିର୍ଦ୍ଦେଶରେ ହିଁ ଯାହାସବୁ କରୁଛି ଏବଂ ବର୍ତ୍ତମାନ ଯେଉଁ ସମୟ ଓ ପରୀକ୍ଷାରେ ମୁଁ ଉପନୀତ ହୋଇଛି, ତାହା ଗତ ଜୀବନର ପ୍ରସ୍ତୁତି ଛଡ଼ା ଅନ୍ୟ କିଛି ନୁହେଁ ।'

ଯାହା ହେବାକୁ ଥିବ ହେବ । ତାକୁ କେହି ରୋକି ପାରିବେନି । ସବୁରି ଜୀବନରେ ଏ ଅନୁଭବ କେବେନା କେବେ ଆସିଥାଏ ।

ବେଳେବେଳେ ଅଲୌକିକତାର ଅନ୍ୟନାମ ଭାଗ୍ୟ ବୋଲି ଅନେକ ଅଭିହିତ କରିଥା'ନ୍ତି । ଗତ ସପ୍ତାହରେ ରାଜସ୍ଥାନରେ ଭୂଜ୍ ସହରଟି ଭୂକମ୍ପନ ଫଳରେ ଯେପରି ଭାବେ ଶ୍ମଶାନରେ ପରିଣତ ହୋଇଛି ଏବଂ ହଜାରହଜାର ସଂଖ୍ୟାର ମଣିଷ ଜୀବନ୍ତ ସମାଧି ପାଇବା ବେଳେ ଜଣେଜଣେ ଶିଶୁ ଯେଉଁଭଳି ଅକ୍ଷତ ଭାବେ ଉଦ୍ଧାର ପାଇଛନ୍ତି-ଖବରକାଗଜ ମାନଙ୍କରୁ ତା'ର କାହଣୀ ସବୁ ପଢ଼ିବା ପରେ ଯେକୌଣସି ନାସ୍ତିକ ବି ଭାଗ୍ୟ ଆଡ଼କୁ ତା'ର ହାତ ବଢ଼େଇବ ।

କିଛି ବର୍ଷ ତଳେ ଜଣେ ବରିଷ୍ଠ ପ୍ରଶାସନିକ ଅଧିକାରୀଙ୍କ ଜୀବନର ଘଟଣାଟିଏ ଶୁଣିବାକୁ ମିଳିଥିଲା ଏ ଲେଖକକୁ ତା ମୁହଁରୁ । ଘଟଣାଟି ଥିଲା ଏଇପରି;

ଯଦିଓ ପ୍ରଶାସନିକ କ୍ଷମତା ଓ ବିଳାସ ସେ ପାଇଥିଲେ, ମାତ୍ର ଭଦ୍ରବ୍ୟକ୍ତି ଖୁବ୍ ଦୁଃଖୀ ଥିଲେ ନିଜେ ବ୍ୟକ୍ତିଗତ ଜୀବନରେ । ତା'ର କାରଣଟି ହେଲା-ଏତେଗୁଡ଼ାଏ ଯଶ, କ୍ଷମତା ଓ ଅର୍ଥାର୍ଜନ ପରେବି ସେ ତାଙ୍କର ଏକମାତ୍ର ପୁତ୍ରଟିକୁ ଠିକ୍ ବାଟରେ ନେଇ ପାରିଲେନି । ସବୁବେଳେ ନିଜ ଭାଗ୍ୟକୁ ସେ ନିନ୍ଦା କରୁଥିଲେ ।

ପୁଅଟି ମାଟ୍ରିକ୍ ପାଶ୍ କରିବା ପରେ ଦୁଇବର୍ଷ କଲେଜରେ ବିଜ୍ଞାନ ବିଭାଗରେ ପଢ଼ିଲା । ମାତ୍ର ଭଦ୍ରବ୍ୟକ୍ତିଙ୍କ ଇଚ୍ଛା ଥିଲା ପୁଅଟି ଅନ୍ତତଃ ଅଧିକ ନହେଲେବି ତାଙ୍କ ପରି ଇଞ୍ଜିନିୟରଟିଏ ହେଉ । ସବୁଆଡ଼େ ପ୍ରବେଶିକା ପରୀକ୍ଷା ଦେଲା, ମାତ୍ର କୋଉଠୁ ସୁସମ୍ବାଦଟିଏ ଆସିଲା ନାହିଁ । କେହି ଜଣେ ଶୁଭାକାଂକ୍ଷୀ ଭଦ୍ରବ୍ୟକ୍ତିଙ୍କୁ ଗୋଟିଏ ଇଞ୍ଜିନିୟରିଂ କଲେଜର ଠିକଣା ଦେଲେ । ଠିକଣାଟି ପାଇ ଭଦ୍ରବ୍ୟକ୍ତି କୃତ୍ୟକୃତ୍ୟ ହେଲେ । ଅଗତ୍ୟା ପୁଅକୁ ନେଇ ଉକ୍ତ କଲେଜକୁ ଚାଲିଲେ । ପୁଅର ସେଠି ଆଡମିଶନ୍‌ହେଲା । ଭଲ କଲେଜ । ଯାହାବି ଚାନ୍ଦା ପଡ଼ିଲା ସେ ଗୋଟଏ କିସ୍ତିରେ ଦେଇଦେଲେ । କଲେଜଟି ମହାରାଷ୍ଟ୍ରର ଲାଟୁର ସହରରେ । ଭଦ୍ରବ୍ୟକ୍ତି ଈଶ୍ୱରଙ୍କୁ ବିଳମ୍ବରେ ହେଲେବି କୃତାଜ୍ଞତା ଜଣାଇଲେ ।

ପୁଅଟିର କିନ୍ତୁ ପାଠ ପଢ଼ିବାକୁ ଆଦୌ ଇଚ୍ଛା ନଥାଏ । ମାସେ ଦୁଇମାସ ବହୁ କଷ୍ଟରେ ସେଠି ରହିଲା । ପୁଅର ଭଲମନ୍ଦ ସବୁଦିନ ତା'ର ବାପା ମାଆ ଟେଲିଫୋନ୍‌ରେ ବୁଝୁଥା'ନ୍ତି । ମାତ୍ର ଦିନେ ପୁଅଟି ସେଠି ପଢ଼ିବ ନାହିଁ ବୋଲି ନିଷ୍ପତ୍ତି ନେଇ ଭୁବନେଶ୍ୱର ଫେରି ଆସିଲା ।

ଯେଉଁଦିନ ପୁଅ ଘରକୁ ପଳାଇ ଆସିଲା ସେଦିନ ଘରେ ବୋମା ଫୁଟିବା ଭଳି ପରିସ୍ଥିତି । ଭଦ୍ରବ୍ୟକ୍ତିଙ୍କ ଘରେ ରାତିରେ ଚୁଲି ମଧ୍ୟ ଜଳିଲାନି । ମାତ୍ର ସକାଳୁ ସକାଳୁ ଟେଲିଭିଜନ୍ ଆଉ ରେଡିଓରୁ ଖବର ପାଇ ଭଦ୍ରବ୍ୟକ୍ତି ଏକରକମ ସ୍ତବ୍ଧ ହୋଇଗଲେ । ଖବରଟି ଥିଲା ଏଇପରି : ଗତ ରାତିରେ ଲାଟୁର ସହରରେ ଭୂମିକମ୍ପ ହୋଇ ପ୍ରାୟ ପଚାଶ ହଜାର ଲୋକଙ୍କ ପ୍ରାଣହାନି ଘଟିଛି ଏବଂ ଭଦ୍ରବ୍ୟକ୍ତିଙ୍କ ପୁଅ ପଢୁଥିବା ଇଞ୍ଜିନିୟରିଂ କଲେଜର ଗୋଟିଏ ବି ହେଲେ ଛାତ୍ର ବଞ୍ଚିନାହାଁନ୍ତି ସେଇ ଦୁର୍ଗତିରୁ । ବଞ୍ଚିଥିଲା କେବଳ ତାଙ୍କର ପୁଅ । ୧୯୯୩ରେ ଲାଟୁରରେ ଘଟିଥିବା ଭୂମିକମ୍ପ ଏବେବି ସଜୀବସ୍ମୃତିରେ । ଭଦ୍ରବ୍ୟକ୍ତି, ପୁଅ ଲାଟୁର୍‌ରୁ ଫେରି ଆସଲା ବୋଲି, କେବେବି ଦୁଃଖ କରିନାହାଁନ୍ତି ଆଉ ।



# ଉପନିବେଶବାଦର ମୃତ୍ୟୁ

'ଜୀବନର ସଂଜ୍ଞା କ'ଣ ବୋଲି ପଚାରିଲେ, ମୁଁ ତା'ର କି ଉତ୍ତର ଦେଇପାରିବି ? ଜୀବନ ମୋ' ପାଇଁ ଏକ ବିସ୍ତୀର୍ଣ୍ଣ ପ୍ରଶ୍ନବାଚୀ, ଏକ ଅନ୍ତହୀନ ବିସ୍ମୟ ମୁଦ୍ରା'

ଗାଳ୍ପିକ ତରୁଣକାନ୍ତି ମିଶ୍ରଙ୍କ 'ଉପନିବେଶ' ଶୀର୍ଷକ ଗଳ୍ପର ଏହା ହେଉଛି ପ୍ରଥମ ପଙ୍‌କ୍ତି । ଗଳ୍ପଟିର ଚରିତ୍ର ସଂଖ୍ୟା ହେଉଛି ଚାରି । କବି ଶୁଦ୍ଧୋଦନ, 'ରବିବାର' ପତ୍ରିକାର ସହ ସମ୍ପାଦକ ଅର୍ଦ୍ଧେନ୍ଦୁ ରାୟ, ତାଙ୍କର ବନ୍ଧୁ ଅର୍ଥାତ୍ ନିଜେ ଗଳ୍ପକାର (ଠାଏ ତରୁଣ ବୋଲି ସମ୍ବୋଧନ ରହିଛି) ଓ କବିଙ୍କ ପତ୍ନୀ ସୁଷମା ।

ଗୋଟିଏ ସାକ୍ଷାତ୍‌କାରର ଭିତ୍ତିଭୂମିକୁ ଆଧାର କରି କାହାଣୀର କୋଣାର୍କ ଗଢ଼ି ଉଠିଛି । ଏକଦା ସୁନ୍ଦରୀ ଥିବା କଣ୍ଠଶିଳ୍ପୀ ସୁଷମା ଗୋସ୍ୱାମୀଙ୍କର ପ୍ରେମ ବିବାହ ହୁଏ କବି ଶୁଦ୍ଧୋଦନଙ୍କ ସହିତ । ମିଳନ ସ୍ଥଳ ଥିଲା ରେଡ଼ିଓ ଷ୍ଟେସନ୍ । ପରେପରେ ଚାରିଗୋଟି ସନ୍ତାନର ପିତା ଶୁଦ୍ଧୋଦନଙ୍କ ଆକାଉଣ୍ଟାଣ୍ଟ୍ ଜେନେରାଲଙ୍କ ଅଫିସ୍‌ରେ କରୁଥିବା ଚାକିରିଟି ଛାଡ଼ି ଦିଅନ୍ତି । ଅଡ଼ିଟର ଚାକିରିଟି ତାଙ୍କୁ ଖୁବ୍ ଅସହ୍ୟ ମନେହେଉଥିଲା । ଏ କାମଟି ତାଙ୍କୁ ମଲା ମଣିଷର କବର ଖୋଳି, ପୋଷ୍ଟ ମର୍ଟମ, କରିବା ଭଳି ଲାଗୁଥିଲା । ଏହାପରେ ଦାରିଦ୍ର୍ୟ ଆସିଛି । ସେ ଅପମାନ ପାଇଛନ୍ତି । ବାଧ୍ୟ ହୋଇ ପତ୍ନୀ ଗୋଟେ ସିଲେଇ ସ୍କୁଲରେ ଚାକିରି କରିଛନ୍ତି ଘର ଚଳାଇବା ପାଇଁ । ଶୁଦ୍ଧୋଦନ ପ୍ରତିବାଦ କରିନ୍ତି ନାହିଁ । ସ୍ତ୍ରୀ ସଙ୍ଗୀତ ଜଗତରୁ ଦୂରେଇ ଯା'ନ୍ତି ଧିରେଧିରେ ଅଥଚ ନିଜ କବିତାର ପୃଥିବୀରେ ବେଶ୍ ମସ୍‌ଗୁଲ ଥା'ନ୍ତି ଶୁଦ୍ଧୋଦନ ।

ସହ ସମ୍ପାଦକ ଓ ଗଳ୍ପକାର କବିଙ୍କୁ ସାକ୍ଷାତ୍ କରିବାକୁ ଯାଇ କବିଙ୍କ ଆର୍ଥିକ ଦୁରବସ୍ଥାକୁ ଖୁବ୍ ନିକଟରୁ ଦେଖନ୍ତି । ଫଟାଦାଗ ପଡ଼ିଥିବା ଚା'କପ୍ ଓ ଚିନି ପଡ଼ିନଥିବା ଚା' ଭିତରୁ ଦାରିଦ୍ର୍ୟର ଚେହେରା ବେଶ୍ କରୁଣ ଦେଖାଯାଏ । ପରିଶେଷରେ ସାକ୍ଷାତ୍‌କାର ଶେଷ ହେବା ପରେ, କବି ପତ୍ନୀ ସହ ସମ୍ପାଦକଙ୍କଠାରୁ ଏଇ ସାକ୍ଷାତକାର ପାଇଁ ଶହେଟଙ୍କା ମାଗି ନେବା ଘଟଣାଟି କାହାଣୀର ଶେଷ ପର୍ଯ୍ୟାୟ ।

ନିଜ ନିଜ ଉପନିବେଶରେ ରହୁଥିବା ଦୁଇଜଣଙ୍କ ଜୀବନକୁ ଖୁବ୍ ଚମତ୍କାର ଭାବେ ଚିତ୍ରଣ କରିଛନ୍ତି ଗାଳ୍ପିକ ତରୁଣକାନ୍ତି । ଜଣେ ଭଲ ଗାଳ୍ପିକ ଭାବେ ସେ ପାଠକୀୟ ଶ୍ରଦ୍ଧାର ଭାଜନ ହୋଇଛନ୍ତି ଦୁଇଦଶନ୍ଧି ହେଲା । ସମ୍ଭବତଃ ଗଳ୍ପ ଲେଖିବା ଦିନରୁ ସେ ନିଜକୁ ଗଳ୍ପାକାଶର ଏକ ଉଜ୍ଜ୍ୱଳ ନକ୍ଷତ୍ର ଭାବେ ଚିହ୍ନିତ କରିଛନ୍ତି ।

ଏ ଆଲୋଚନା ତରୁଣକାନ୍ତିଙ୍କ ଗଳ୍ପ ସମ୍ପର୍କରେ ଆଲୋକପାତ କରିବା ଲାଗି ଉଦ୍ଦିଷ୍ଟ ନୁହେଁ । ମାତ୍ର ଯେଉଁ ଓଡ଼ିଆ ପତ୍ରିକାରେ ଏଇ ଗଳ୍ପଟି ପ୍ରକାଶିତ ହୋଇଛି, ଉକ୍ତ ପତ୍ରିକାର ଉଦ୍ଭଟ ଆଚରଣ

ହିଁ ଏ ଲେଖାଟି ପ୍ରସ୍ତୁତ କରିବାର ମୂଳ ଉତ୍ସ ବୋଲି ସ୍ୱୀକାର କରିବା ଅପ୍ରାସଙ୍ଗିକ ହେବ ନାହିଁ । ଘଟଣାଟି ଏଇପରି :

ସପ୍ତାହକ ତଳେ ଜଣେ ବନ୍ଧୁ କଥା ପ୍ରସଙ୍ଗରେ ସୂଚନା ଦେଲେ ଯେ ଗାଳ୍ପିକ ତରୁଣକାନ୍ତିଙ୍କ ଉପନିବେଶ ଗଳ୍ପଟି ପ୍ରକାଶ ପାଇବା ପରେ ସମ୍ପାଦନା ମଣ୍ଡଳୀ ଏହି ଗଳ୍ପଟିକୁ ପତ୍ରିକାରୁ ଚିରିବା ପରେ ବିକ୍ରି ପାଇଁ ବଜାରକୁ ଛାଡ଼ିଛନ୍ତି । ଏ କଥା ଜଣାପଡ଼ିଛି କେବଳ ସୂଚୀପତ୍ରରେ ତରୁଣକାନ୍ତିଙ୍କ ଲେଖା ଓ ନାମରୁ । ଏପରିକି ଉକ୍ତ ଗଳ୍ପଟିର ଶେଷ ଭାଗଟି ମଧ୍ୟ ଅକ୍ଷତ ଅବସ୍ଥାରେ ପତ୍ରିକାରେ ରହିଯାଇଛି । ତା' ନହୋଇଥିଲେ ଆରପୃଷ୍ଠାରୁ ଆରମ୍ଭ ହୋଇଥିବା ଅନ୍ୟ ଜଣେ ଗାଳ୍ପିକଙ୍କ ଲେଖାର ପ୍ରଥମାଂଶ ମଧ୍ୟ ଚିରିବାକୁ ପଡ଼ିଥା'ନ୍ତା । ତେବେ ବନ୍ଧୁଜଣକ ଦୈବକ୍ରମେ ତରୁଣକାନ୍ତିଙ୍କ ଉକ୍ତ ଲେଖା ଚିରିନଥିବା ପତ୍ରିକାଟିଏ ପାଇଥିବାରୁ ଖୁବ୍ ଆଶ୍ୱସ୍ତ ଅନୁଭବ କରୁଥିଲେ ।

: ଆପଣ କିଭଳି ଏକଥା ଜାଣିଲେ ? 'ମୁଁ କୌତୁହଳ ହୋଇ ପ୍ରଶ୍ନ କଲି ।'

'ଯା ଭିତରେ ମୁଁ ରାଉରକେଲା ଯାଇଥିଲି । ସେଠି କେତେକ ଲେଖକ ବନ୍ଧୁଙ୍କ ଠାରୁ ଏ କଥା ଶୁଣିଲି । ପରେ ସମ୍ବଲପୁର, ବାଲେଶ୍ୱର ଏବଂ କଟକରୁ ମଧ୍ୟ ଏ ସମ୍ପର୍କରେ ଚିଠି ପାଇଛି ।' ସେ କହିଲେ ।

ଏହା କହିଁକି ହେବ ? ହୁଏତ ଏପରି ଏକ ପ୍ରଶ୍ନ ମୁଁ କରିବାକୁ ଚାହୁଁଥିଲି । ମାତ୍ର ମୋର ପ୍ରଶ୍ନକୁ ଅପେକ୍ଷା ନକରି ସେ କାରଣଟି ମଧ୍ୟ ବଖାଣିଲେ ।

: ରାଜନୈତିକ ଆକ୍ରୋଶର ଅହେତୁକ ଶିକାର ହୋଇଛନ୍ତି ଗାଳ୍ପିକ ତରୁଣକାନ୍ତି । ସେ କେବଳ ସଫଳ ଗାଳ୍ପିକ ନୁହଁନ୍ତି ବରିଷ୍ଠ ପ୍ରଶାସକ ମଧ୍ୟ । ଏବେ ଘରୋଇ ବିଭାଗର ସଚିବ । ଏ ବିଭାଗ ମୁଖ୍ୟମନ୍ତ୍ରୀଙ୍କ ଅଧୀନରେ ଅଛି । ଠିକ୍ ସେଇପରି, ତରୁଣକାନ୍ତିଙ୍କ ଲେଖା ଛାପି ପରେ ଚିରିଥିବା ପତ୍ରିକାର ସମ୍ପାଦକ ଜଣେ ରାଜନୈତିକ ନେତା । ମୁଖ୍ୟମନ୍ତ୍ରୀଙ୍କ ସହ ତାଙ୍କର ଏବେ ନାଗନାଡ଼ି । ତାଙ୍କ ସମ୍ପାଦିତ ଖବରକାଗଜରେ ସବୁବେଳେ ମୁଖ୍ୟମନ୍ତ୍ରୀ ଓ ତାଙ୍କ ସହକର୍ମୀମାନଙ୍କ ଭର୍ତ୍ସନା ପଢ଼ିବାକୁ ମିଳୁଛି ଏବଂ ସେଇ କାରଣରୁ କିଛି ଦିନ ତଳେ ତରୁଣକାନ୍ତିଙ୍କ ଚରିତ୍ର ସଂହାର କରି ଲେଖାଟିଏ ପ୍ରକାଶ ପାଇଥିଲା ତାଙ୍କ ସାପ୍ତାହିକୀରେ, ଏଇଟା ହେଉଛି ଦ୍ୱିତୀୟ ଆଟାକ୍ ।'' ଏତକ କହି ସାରି ବନ୍ଧୁ ନିଶ୍ୱାସ ମାରିଲେ । ମୁଁ ଦୀର୍ଘଶ୍ୱାସ ମାରିଲି ।

ଦୀର୍ଘଶ୍ୱାସ ଏଇଥିପାଇଁ ମାରିଲି - ଉକ୍ତ ପତ୍ରିକାଟି ଏକଦା ବୁଦ୍ଧିଜୀବୀ ମହଲରେ ବେଶ୍ ଆଦୃତ ଥିଲା । ମାତ୍ର ଏବେ ଏହା ତା'ର ପୂର୍ବ ଗୌରବକୁ ହରେଇ ବସିଛି । ଏହାର ପ୍ରଥମ ତଥା ପ୍ରତିଷ୍ଠାତା ସମ୍ପାଦକ ଥିଲେ ଜଣେ ବଳିଷ୍ଠ ରାଜନୀତିଜ୍ଞ ତଥା ସୁସାହିତ୍ୟିକ । ୧୯୭୫ ମସିହାରେ ଜରୁରୀକାଳୀନ ପରିସ୍ଥିତିର ପ୍ରତିବାଦ ଯୋଗୁଁ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀ ଏବଂ ତାଙ୍କର ସଚିବ ତଥା ବିଶିଷ୍ଟ କବି ରମାକାନ୍ତ ରଥ ସେଥିପାଇଁ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ସେତେବେଳେ ଓ ପରେବି କବି ରମାକାନ୍ତ ରଥଙ୍କ କବିତା ଏଇ ପତ୍ରିକାରେ ସ୍ଥାନିତ ହୋଇଛି ଜରୁରୀକାଳୀନ ପରିସ୍ଥିତି ବେଳେ । ପତ୍ରିକାର ତତ୍କାଳୀନ ସମ୍ପାଦକ ତଥା ରାଜନୀତିଜ୍ଞ ରମାକାନ୍ତଙ୍କ ଦୁଇଟି ଭୂମିକା ସମ୍ପର୍କରେ ଅବଗତ ଥିଲେ । ଜଣେ କବି, ଆଉ ଅନ୍ୟଟି ପ୍ରଶାସକ । ପ୍ରଶାସକଙ୍କ ବିରୁଦ୍ଧରେ ତାଙ୍କର (ପ୍ରତିଷ୍ଠାତା ସମ୍ପାଦକଙ୍କର) ଅଭିଯୋଗ ଥିଲା, ମାତ୍ର କବିଙ୍କ ପ୍ରତି ଥିଲା ଅନୁରାଗ । ଏବେ ସେ ଅନୁରାଗୀ ସମ୍ପାଦକଙ୍କର ଶୂନ୍ୟତା କଣ୍ଟା ଭଳି ଫୋଡ଼ି ଦେଉଛି ଲେଖକର ଆତ୍ମାକୁ । ସେ କଣ୍ଟାର ଦଂଶନରେ ଆହତ ଲେଖକର ଯନ୍ତ୍ରଣାକୁ ବୁଝିବା ଲାଗି ଏବର ସମ୍ପାଦକର ଶିରୀପା ଭିଡ଼ିଥିବା ବ୍ୟକ୍ତିଙ୍କ ପାଖରେ ସମୟ ଅଥବା ଇଚ୍ଛା କାହିଁ ? ଦୁଃଖ ଏତିକି ଯେ ପ୍ରଶାସକ ତରୁଣକାନ୍ତି ଏବଂ ଗାଳ୍ପିକ ତରୁଣକାନ୍ତିଙ୍କ ଭିତରେ ଭିନ୍ନତା ଦେଖିବାରେ ସେ ବିଫଳ ହୋଇଛନ୍ତି ।

ଗୋଟିଏ ଭୂମିକା କେଉଁଠି ସରେ , ଆଉ ଏକ ଭୂମିକା କେଉଁଠୁ ଆରମ୍ଭ ହୁଏ-ଏ କଥା ପ୍ରତିଟି ମଣିଷ ମନେରଖିବା ଦରକାର । ଜଣକୁ ସ୍ୱାମୀ, ପୁତ୍ର, ଭ୍ରାତା, ପିତା ଓ ବନ୍ଧୁର ଭୂମିକା ନେବାକୁ ହୁଏ ଜୀବନକାଳରେ । ଜଣେ ସଫଳ ମଣିଷ ତା'ର ସବୁ ଭୂମିକାକୁ ସଫଳତାର ସହ ତୁଲାଇ ପାରିବାରେ ହିଁ ବ୍ୟକ୍ତିତ୍ୱର ପରାକାଷ୍ଠା ପ୍ରମାଣିତ ହୁଏ । ଏଠି ସ୍ପଷ୍ଟ କରିଦେବା ଉଚିତ୍ ହେବ ଯେ ଉପନିବେଶ ଗଳ୍ପଟି ଜଣେ କଥାକାର ଭାବେ ତରୁଣକାନ୍ତି ପତ୍ରିକାଟିକୁ ପଠାଇଥିବେ, ପ୍ରଶାସକ ଭାବେ ନୁହେଁ । ଲେଖାଟି ପ୍ରକାଶ ନକରିବା ସମ୍ପଦକଙ୍କ ଅଧିକାରଭୁକ୍ତ ହୋଇପାରେ, ମାତ୍ର ଲେଖାଟିକୁ ପ୍ରକାଶିତ କରି ପୁନଶ୍ଚ ଚିରି ପକାଇବା ସ୍ୱଭାବ ତାଙ୍କୁ (ସମ୍ପାଦକଙ୍କୁ) ଖୁବ୍ ନ୍ୟୁନ କରିଦେଉଛି ପାଠକମାନଙ୍କ ସାମ୍ନାରେ ।

ଟିକେ ଅଲଗା ଦୃଷ୍ଟିକୋଣରୁ କଥାଟିକୁ ବିଚାର କରାଯାଇପାରେ । ଯୁଗେ ଯୁଗେ କବି ଓ ଲେଖକକୁ ଲାଞ୍ଛନାର ଆଘାତ ମିଳିଛି । ସେମାନଙ୍କ ହାତରେ ଯେତିକି ଗୋଲାପ ଫୁଲ ଦିଆଯାଇଛି, ତା'ଠୁ ହୁଏତ ଅନେକ ଗୁଣ କଣ୍ଟାର ଆଘାତ ସହିବାକୁ ଦିଆଯାଇଛି ଉପନିବେଶବାଦ ମନସ୍କ ସମାଜ ଦ୍ୱାରା । ସେଇ ଆଘାତଜନିତ ରକ୍ତରେ ରଞ୍ଜିତ ହୋଇଚନ୍ତି ରସକଲ୍ଲୋଳକାର ଦୀନବନ୍ଧୁ ଦାସ, ଭକ୍ତକବି ବଳରାମ, ରୁଷୀୟ ଔପନ୍ୟାସିକ ସୋଲଝେନିତ୍‌ସିନ୍, ଗାଳ୍ପିକ ଓ ହେନେରୀ ଓ ଡଷ୍ଟୋଭସ୍କି । ଆହୁରି ଅନେକ ଉଦାହରଣ ରହିଛି । ମାତ୍ର ତାଲିକାଟି ଅନେକ ଲମ୍ବା ହୋଇଯିବ, କିନ୍ତୁ, ସବୁବେଳେ ଏଇ ଉପନିବେଶବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବା ଶିଳ୍ପୀମାନେ ହିଁ ବିଜୟୀ ହୋଇଛନ୍ତି ।

ପ୍ରସଙ୍ଗ କ୍ରମେ ଆମେରିକାର ରାଷ୍ଟ୍ରନୀତିଜ୍ଞ ଆଡ୍‌ଲାଲ ଷ୍ଟିଭେନ୍‌ସନ୍‌ଙ୍କ ଉକ୍ତିଟି ମନେପଡୁଛି- 'ସମ୍ପାଦକଟି ଜଣେ ବ୍ୟକ୍ତି ଯିଏ ଗହମରୁ ଅଗାଡ଼ିକୁ ଅଲଗା କରେ, ମାତ୍ର ସେଇ ଅଗାଡ଼ିକୁ ହିଁ ଛାପିଥାଏ ।' ସତରେ ଏ ମନ୍ତବ୍ୟଟି ଏଇ ସମ୍ପାଦକଙ୍କ ପ୍ରତି କେତେ ପ୍ରଯୁଜ୍ୟ ।

ଅଶା, ଗାଳ୍ପିକ ତରୁଣକାନ୍ତି ତାଙ୍କର 'ଉପନିବେଶ' ଗଳ୍ପର ନାମକରଣ ଅନୁଯାୟୀ ଆଗାମୀ ଦିନରେ ସଂକଳନଟିଏ ପ୍ରକାଶ କରି ତାଙ୍କର ଅଗଣିତ ପାଠକଙ୍କୁ ଉପହାର ଦେବା ସହ, ଉକ୍ତ ସମ୍ପାଦକଙ୍କୁ ଶିଷ୍ଟାଚାରର ପରିଭାଷା ଶିଖାଇବେ । ଅନ୍ତତଃ ସ୍ୱାଭିମାନୀ ଲେଖକମାନେ ଏତିକି ଆଶା କରିବା ଅପ୍ରାସଙ୍ଗିକ ହେବନାହିଁ ।



# ମିଛ ଉପାଖ୍ୟାନ

ପ୍ରତିଦିନ ଖବରକାଗଜର ପୃଷ୍ଠାମଣ୍ଡନ କରି ଯେଉଁ ଖବରମାନ ପ୍ରକାଶ ପାଏ ସେଥିରେ ଥାଏ ରାଜନୈତିକ ନେତାଙ୍କ ପ୍ରତିଶ୍ରୁତି, ଅନେକ ପ୍ରତାରଣାର କାହାଣୀ, ଅନେକ ଅନେକ ଅପହଞ୍ଚ ସ୍ୱପ୍ନର କଥା । ତେବେ ସେ ସବୁକୁ ବିଶ୍ଳେଷଣ କଲେ ଅଚିରେ ଗୋଟିଏ କଥା ମନକୁ ଆପେ ଆପେ ଆସିଯିବ- ଏ ସବୁର ମଞ୍ଜି ହେଉଚି 'ମିଛ' । ସବୁ ପ୍ରତିଶ୍ରୁତି, ପ୍ରତାରଣା ଓ ସ୍ୱପ୍ନ କିଣାବିକା ସେଇ ମିଛର ଶାଖା ପ୍ରଶାଖା ମାତ୍ର ।

ସଂସାରରେ ମିଛର ଗୁରୁତ୍ୱ ରହିଛି ନିଶ୍ଚୟ । କେହି କେହି ଯୁକ୍ତିକରନ୍ତି ଖାଣ୍ଟି ସୁନାରେ ଅଳଙ୍କାର ଗଢିବା ସମ୍ଭବ ନୁହେଁ, ସେଥିରେ କିଛି କିଛି ଖାଦ ମିଶାଇବା ଆବଶ୍ୟକ । ଠିକ୍ ସେଇପରି ଶତକଡା ଶହେ ପ୍ରତିଶତ ସତରେ ମଣିଷ ଜୀଇଁବା କାଠିକର ପାଠ । ତେଣୁ ଟିକେ ଟିକେ ମିଛ, ଜୀବନକୁ ସ୍ୱାଦମୟ କରିଥାଏ - ଠିକ୍ ଯେପରି ଅଳ୍ପ ଲୁଣରେ ତରକାରି ସ୍ୱାଦିଷ୍ଟ ହେଇଥାଏ । କିନ୍ତୁ ଏ 'ମିଛ'ର ପରିମାଣ ଜୀବନ ତରକାରିରେ କେତେ ପରିମାଣରେ ରହିବା ଦରକାର ସେ କଥା, ମଣିଷ ନିଜେ ବିଚାର କରିବା ଆବଶ୍ୟକ । ଯେଉଁ ଜୀବନରେ 'ମିଛ'ର ମାତ୍ରା ଯେତେ ଅଧିକ, ସେ ଜୀବନ ସେତିକି ଆତ୍ମଗ୍ଲାନିରେ ସଙ୍କୁଳିତ, ପାପଗ୍ରସ୍ତ । ହୁଏତ ସେଇଥି ପାଇଁ ହୋମସ୍ କହିଥିଲେ; ପାପର ଅନେକ ସରଞ୍ଜାମ ଅଛି, ହେଲେ ସେ ସବୁର 'ବେଣ୍ଟ' ହେଇପାରିବ 'ମିଛ' । (Sin has many tools, but a lie is the handle which fits them all).

ମିଛର ବନ୍ଦନା ଗାଇବା ପାଇଁ ଏବେ ଅନେକ ଭିଡ । ସ୍ୱାର୍ଥର ଯଜ୍ଞକୁଣ୍ଡରେ ସତ୍ୟର ଆହୁତି ଚାଲିଛି ଅହରହ । ଯୁଗେ ଯୁଗେ 'ମିଛ' କୁ ସମ୍ମାନିତ କରାଯାଇଛି । ପ୍ରସଂଗକ୍ରମେ ଗୋଟିଏ ଉଦାହରଣ ଦିଆଯାଇପାରେ ଶୂଦ୍ରମୁନି ସାରଳାଦାସଙ୍କ 'ମହାଭାରତ'ରୁ ।

'ମହାଭାରତ' ର ବନପର୍ବରେ 'ବାବଯେୁରୀ' ଉପାଖ୍ୟାନଟିକୁ ଏଠି ନିଆଯାଇପାରେ । ପାଣ୍ଡବ ଏବଂ କୌରବମାନଙ୍କ ଯୁଦ୍ଧ ଚାଲିଥାଏ । ଥରେ କୌରବମାନେ ଏବଂ ସେମାନଙ୍କ ଯୋଦ୍ଧାମାନେ କୌଣସି ଏକ ଗୁପ୍ତ ମନ୍ତ୍ରଣାରେ ଲିପ୍ତଥିବାବେଳେ ହଠାତ୍ ପାଣ୍ଡବମାନଙ୍କ ଏକମାତ୍ର ଭରସା ତଥା ସାଥୀ ଶ୍ରୀକୃଷ୍ଣଙ୍କୁ ସେହି ସ୍ଥାନକୁ ଆସୁଥିବାର ଦେଖି ଏକ ଅଜଣା ଆତଙ୍କରେ କୌରବମାନେ ହଠାତ୍ ଚୁପ୍ ହେଇଗଲେ । କାରଣ, ସେମାନଙ୍କ ଧାରଣାରେ ଶ୍ରୀକୃଷ୍ଣ ହେଉଛନ୍ତି କୂଟନୀତି ବିଶାରଦ ଏବଂ ଜଣେ କୁଚକ୍ରୀ ମଧ୍ୟ । ତାଙ୍କ ଆଗମନକୁ ସେମାନେ ଆଦୌ ସ୍ୱାଗତ

କରିପାରୁ ନ ଥିଲେ । ଶ୍ରୀକୃଷ୍ଣଙ୍କୁ ସେମାନଙ୍କ ମନକଥା ଜାଣିବା ଲାଗି ବେଶି ସମୟ ଲାଗିଲା ନାହିଁ । ସେମାନଙ୍କ ଆତଙ୍କ କଥା ମନେପକାଇ ସେ ହସିବା ଆରମ୍ଭ କରିଦେଲେ । ତାଙ୍କ ହସିବାର 'କାରଣ' ପଚାରିଲେ କୌରବମାନେ । ଶ୍ରୀକୃଷ୍ଣ କହିଲେ, ତୁମମାନଙ୍କର 'ଅହେତୁକ ଆତଙ୍କ' କଥା ମନେପଡି ମତେ କେବଳ ହସ ଲାଗୁନାହିଁ ବରଂ 'ବାବରପୁରୀ' କଥା ମନେପଡୁଛି । 'ବାବରପୁରୀ !' ସେମାନେ ପଚାରିଲେ । ଏଥର ଶ୍ରୀକୃଷ୍ଣ କହିଲେ, ବାବରପୁରୀ ନାମକ ଗୋଟିଏ ରାଜ୍ୟ ଅଛି । ସେଠାରେ କୌଣସି ନରନାରୀ ବସ୍ତ୍ର ପରିଧାନ କରନ୍ତି ନାହିଁ । ସମସ୍ତେ ଥା'ନ୍ତି ଉଲଗ୍ନ । ଅଥଚ ପାଖରେ ଥିବା ବସ୍ତ୍ରକୁ ସେମାନେ ପରିଧାନ କରିବା ପରିବର୍ତ୍ତେ ନିଜ ନିଜ ମସ୍ତକରେ ପଗଡି କରି ପିନ୍ଧିଥାନ୍ତି । ସେମାନେ ମିଛ କହିଥାନ୍ତି ସବୁବେଳେ । ସତର ପାଖ ପଶନ୍ତି ନାହିଁ । ପ୍ରତିବର୍ଷ ସେ ଦେଶର ରାଜା  ରାଜ୍ୟବାସୀଙ୍କ ପାଇଁ ଆୟୋଜନ କରିନ୍ତି ଏକ ସମ୍ମିଳନୀ ଓ ସେଠାରେ ମଧ୍ୟ ପ୍ରତିଯୋଗିତାର ବ୍ୟବସ୍ଥା ଥାଏ । ସେ ବ୍ୟବସ୍ଥା ଭିତରେ ଥାଏ- ସମବେତ ରାଜ୍ୟବାସୀ ଉକ୍ତ ସମ୍ମିଳନୀରେ କେବଳ ମିଛ ହିଁ  କହିବେ ଏବଂ ସବୁଠାରୁ ଉତ୍ତମ ମିଛୁଆ ବ୍ୟକ୍ତିର ମୁଣ୍ଡରେ ରାଜା ଶିରିପା ବାନ୍ଧୁଥିଲେ । ଏଇପରି ବର୍ଷ ବର୍ଷ ଧରି ଲୋକ ମିଛ କହି ରାଜାଙ୍କ ଦ୍ୱାରା ସମ୍ମାନିତ ହେଉଥିଲେ ।

ଥରେ ଏଇପରି ସମ୍ମିଳନୀ ଚାଲିଥିବାବେଳେ ଅନେକ ମିଛୁଆଙ୍କ ଭିତରୁ ଜଣେ ଯୁବକ ହଠାତ୍ ଉଠିପଡି ଉଚ୍ଚ ସ୍ୱରରେ କହିବାକୁ ଆରମ୍ଭ କଲା -

: ଆପଣମାନେ 'କୋକୁଆ' ସଂପର୍କରେ କିଛି ଖବର ପାଇଛନ୍ତି କି ?''

ଯୁବକର ପ୍ରଶ୍ନ ଶୁଣି ସମବେତ ଜନତା ତାକୁ ପ୍ରଶ୍ନ କଲେ ;

: କୋକୁଆ ? କ'ଣ ସିଏ ?''

: କୋକୁଆ ଏକ ଜନ୍ତୁର ନାଁ ।'' ଯୁବକଟି ଏଥର ଉତ୍ତର ଦେଲା  ''ଏହି ଜନ୍ତୁଟି ଦେଖିବାକୁ ଖୁବ୍ କିମ୍ଭୂତ କିମାକାର ଏବଂ ଏହାର କାମ ହେଲା ମୁଖ୍ୟତଃ ଯେଉଁଠି ମଣିଷକୁ ଦେଖିବ, ଗୋଟାପଣେ ଖାଇଯିବ ।'' ଯୁବକଟିର ବାକ୍ ଚାତୁରୀରେ ଏପରି ମନମୁଗ୍ଧ ହୋଇଗଲେ ସମବେତ ଜନତା ଓ ଖୋଦ୍ ରାଜା; ସେ ବର୍ଷର ଶ୍ରେଷ୍ଠ ମିଛୁଆର ଶିରିପା ଉକ୍ତ ଯୁବକଟି ମୁଣ୍ଡରେ ବନ୍ଧା ହେଲା । ଏହାଛଡା ଯୁବକଟିର ଏତାଦୃଶ ବର୍ଣ୍ଣନା ପ୍ରତିଟି ଗ୍ରାମରେ ଏତେ ଦ୍ରୁତ ଗତିରେ ଯାଇ ପ୍ରଚାରିତ ହେଲା ଯେ ଦିନ ଦ୍ୱିପ୍ରହରରେ ଲୋକେ ପଦାକୁବାହାରିବାକୁ ଭୟ କଲେ 'କୋକୁଆ'ର ନାଁ ଶୁଣି । ସେଇଥିପାଇଁ ଓଡିଶାରେ ଆଜି ବି 'ଭୟ' ଶବ୍ଦ ସହ 'କୋକୁଆ' ମଧ୍ୟ ଯୋଡି ଦିଆଯାଏ । ଯଦିଓ କାଳକ୍ରମେ ବୁଝିବାକୁ ଡେରି ହେଲା ନାହିଁ ଯେ 'କୋକୁଆ' ବୋଲି କୌଣସି ଜନ୍ତୁ ନାହିଁ କିମ୍ବା ନ ଥିଲା  । ଏହା ଏକ ମନଗଢା ମିଛ କାହାଣୀ ।

ତେବେ 'ବାବରପୁରୀ' ଉପାଖ୍ୟାନରେ ସାରଳା ଦାସ ଯେଉଁ ସାମାଜିକ ଚିତ୍ର ତତ୍‌କାଳୀନ ସମୟରେ ଦେଇଛନ୍ତି-ତାହା ଏବେ ବି ଅନେକ ସମୟରେ ବଳବତ୍ତର ରହିଛି ବୋଲି ଏ ଲେଖକ ମନେକରେ । ବ୍ୟକ୍ତିମାନଙ୍କର ପରିଧାନ ସଂପର୍କୀୟ ବର୍ଣ୍ଣନା ସାଂପ୍ରତିକ ସମାଜ ପ୍ରତି କବିଙ୍କର କଟାକ୍ଷ ବୋଲି ବୁଝିବାକୁ ହେବ । ତା'ଛଡା ମିଛ କହୁଥିବା ଲୋକ ଅଥବା ଅସାଧୁ ଉପାୟରେ ଜୀବନଯାପନ କରୁଥିବା ମଣିଷକୁ ଏବେ ସମ୍ମାନିତ କରାଯାଉଥିବାର ନଜିରର ମଧ୍ୟ ଅଭାବ ନାହିଁ ଆମ ପାଖରେ । ନିଜର କ୍ରାନ୍ତିକାରୀ ରଚନା ସହ ଦୂରଦୃଷ୍ଟି ଯୋଗୁଁ ସାରଳା ଦାସଙ୍କୁ କାଳଜୟୀ ମହାକବି ଭାବେ ଗଣନା କରାଯାଉଛି । ଏଇଠି ମନେପଡେ ବାଇବେଲର 'ଓଲଡ ଟେଷ୍ଟାମେଣ୍ଟ'ରେ କୁହାଯାଇଥିବା ପଙ୍‌କ୍ତିଟି : ଯେଉଁଠାରେ ଦୂରଦୃଷ୍ଟି ନାହିଁ ସେଠି ଲୋକ ନିପାତ ହୋଇଯା'ନ୍ତି ।'' (Where there is no vision, peoplperish)ଏବଂ ବାସ୍ତବରେ ସାରଳା ଦାସ ଥିଲେ ତତ୍‌କାଳୀନ ସମୟ ଓ ମାନସିକତାର ପ୍ରତିନିଧି ।

ଏବେ ବି ତାଙ୍କ ରଚିତ 'ବାବରପୁରୀ' ଉପାଖ୍ୟାନଟି ମନେପଡିଲେ ବିଶିଷ୍ଟ ବ୍ୟଙ୍ଗ ଲେଖକ ମାର୍କ ଟ୍ୱେନ୍‌ଙ୍କ 'ମିଛ' ଉପରେ ଦେଇଥିବା ମନ୍ତବ୍ୟଟି ଉଦ୍ଧାର କରିବାକୁ ଇଚ୍ଛା ହୁଏ :' ଗୋଟିଏ ବିଲେଇ ଓ ଗୋଟିଏ ମିଛ ଭିତରେ ସବୁଠୁ ବଡ ଫରକ ହେଲା ଯେ ବିଲେଇଟିର କେବଳ ନ'ଟି ଜୀବନ ଅଛି (One of the striking differences between a cat and a lie is that a cat has only nine lives) । ଏଇଥିରୁ ମିଛର ମହାତ୍ମ୍ୟ ସଂପର୍କରେ ସହଜରେ ଅନୁମାନ କରିହେବ ।



# ଧୋତି ଓ ଟାଇ

କିଛିଦିନ ପୂର୍ବେ ଗୋଟିଏ ଶିଳ୍ପ ସଂସ୍ଥାରେ ମହାଶାନ୍ତି ଯଜ୍ଞ ଅନୁଷ୍ଠିତ ହୋଇଥିଲା । ଏଇ ଯଜ୍ଞରେ ଆହୁତି ଦେବା ପାଇଁ ସେଇ ସଂସ୍ଥାର ବିଭିନ୍ନ ବିଭାଗରେ କାର୍ଯ୍ୟ କରୁଥିବା ବରିଷ୍ଠ କର୍ମଚାରୀଙ୍କୁ ଡକାଗଲା । ମୋର ଜଣେ ବନ୍ଧୁଙ୍କର ନାମ ଉକ୍ତ ଆମନ୍ତ୍ରଣ ତାଲିକାରେ ଥିଲା । ଏ ପ୍ରକାର ଆମନ୍ତ୍ରଣ ପାଇ ସେ ହଠାତ ଦୁଃଖି ହେଇଗଲେ । ଏହାର ପ୍ରକୃତ କାରଣ ଥିଲା- ଯଜ୍ଞରେ ଆହୁତି ଦେବା ପାଇଁ ଧୋତି ପରିଧାନ କରିବା ଆବଶ୍ୟକ ଥିଲା ଏବଂ ମୋର ବନ୍ଧୁଙ୍କର ଧୋତି ପିନ୍ଧିବାର ଅଭିଜ୍ଞତା ହିଁ ନ ଥିଲା ।

: "ବାହାଘରକୁ ତ ଧୋତି ପିନ୍ଧିଥିବ ?" କୌତୂହଳ ହେଇ ପଚାରିଲି ।

: "ନା, ସେ ସୁଯୋଗ ମିଳିଲାନି । ବୁତିଦାରରେ ଚଳେଇଥିଲି" ସେ ବଖାଣିଲେ ।

ଏମିତି କଥା ହେଉ ହେଉ ସେ ନିକଟରେ କଲିକତା ଯାଇଥିବା କଥା କହିଲେ । କୌଣସି ଏକ ବୃହତ ଶିଳ୍ପାନୁଷ୍ଠାନରେ ତାଙ୍କର ଇଣ୍ଟରଭ୍ୟୁ ଦେବାର ଥିଲା । ଭଲ ଚାକିରି ମୋଟା ଦରମା । ସେଇଟିକୁ ସେ ହାତଛଡା କରିବାକୁ ଚାହୁଁ ନ ଥିଲେ । କିନ୍ତୁ ଚାକିରିଟି ତାଙ୍କୁ ନ ମିଳିବାର କାରଣ ଭିତରୁ ଗୋଟିଏ ଥିଲା ଯେ ସେ ଟାଇ ପିନ୍ଧି ନ ଥିଲେ ଅଥଚ ସମବେତ ସମସ୍ତ ପ୍ରାର୍ଥୀ ଖୁବ ଭଲ ସୁଟ୍ ଓ ଟାଇ ପିନ୍ଧି ସ୍ମାର୍ଟ ଲାଗୁଥିଲେ । ଟାଇ ନ ପିନ୍ଧିବାର କାରଣ ହେଲା, ସେ ଟାଇର ନଟ୍ ପକାଇବା ଶିଖି ନଥିଲେ ଯଦିଓ ତାଙ୍କ ବ୍ରିଫ୍‌କେଶରେ ସବୁବେଳେ ଟାଇଟିଏ ମହଜୁଦ ରହୁଥିଲା । ମନେ ହେଉଥିଲା, ସେ ଏବେ ମଝି ନଈରେ ଯିମିତି ଉବୁଟୁବୁ ହେଉଛନ୍ତି । ଧୋତି ପିନ୍ଧିବା ଭଳି ପ୍ରାଚୀନ ପରମ୍ପରାକୁ ସେ ଭୁଲି ଗଲେଣି କିନ୍ତୁ ନୂତନ ପରମ୍ପରାକୁ ସ୍ୱାଗତ କରିବା ଲାଗି ଟାଇଟିଏ ବାନ୍ଧିବାର ଅଭାବ ତଥା ଅକ୍ଷମତାବୋଧ ଜନିତ ଗ୍ଲାନିରେ ଏବେ ଜର୍ଜରିତ ।

କାଳେ କାଳେ ମୂଲ୍ୟବୋଧର ନୂତନ ସଂଜ୍ଞା ନିରୂପଣ ହେଇଚାଲିଥାଏ । ପରିବର୍ତ୍ତନ ହିଁ ଏକମାତ୍ର ସତ୍ୟ ଆଜିର ଦୁନିଆରେ । କିନ୍ତୁ ଯେ କୌଣସି ପରିବର୍ତ୍ତନ ( ସାମାଜିକ, ରାଜନୈତିକ, ମାନସିକ ଅଥବା ଧାର୍ମିକ ଓ ସାଂସ୍କୃତିକ) ପ୍ରତି ମାନବ ଜଗତ ପ୍ରତିରୋଧ କରିଥାଏ ସାଧାରଣତଃ କାରଣଟି ଯାହା ହେଉ ନା କହିଁକି । ସେଇଥି ପାଇଁ କେହି କେହି ମନୀଷି ଦ୍ରୁତ ପରିବର୍ତ୍ତନକୁ ସ୍ୱାଗତ କରିଥାନ୍ତି । ସେମାନଙ୍କ ସ୍ୱର ସହ ଏକମତ ହେଇ ଗୁନ୍ନାର ମିରଡାଲ କୁହନ୍ତି : ମନ୍ଥର ଗତିରେ ଅନେକ ଗୁଡିଏ କ୍ଷୁଦ୍ର ପରିବର୍ତ୍ତନ ଆଣିବା ଅପେକ୍ଷା ଦ୍ରୁତ ଗତିରେ

ବିରାଟ ପରିବର୍ତ୍ତନ ଆଣିବା ଅତି ସହଜ କଥା । ଠିକ୍ ଯେପରି ଥଣ୍ଡା ପାଣିରେ ଧୀରେ ଧୀରେ ବୁଡ଼ିବା ଅପେକ୍ଷା ଚଟାପଟ ଡୁବି ମାରିବା କମ୍ ଯନ୍ତ୍ରଣାଦାୟକ ହେଇଥାଏ । (It is easier to carry out a big rapid change than a series of small gradual changes-just as a plunge in the cold water is less painful than slow submersion) ।

ପୃଥିବୀକୁ ଅଧିକ ସରସ ଓ ସୁନ୍ଦର କରିବା ଉଦ୍ଦେଶ୍ୟରେ ପରିବର୍ତ୍ତନକୁ ସ୍ୱାଗତ କରିବାକୁ ପଡିଥାଏ । ପରିବର୍ତ୍ତନ ନାଁରେ ଯେଉଁମାନେ ପରିବର୍ତ୍ତନ ଚାହାନ୍ତି ସେମାନେ ତା'ର ସ୍ୱାଦ ଚାଖିବାରେ ସଫଳ ହୋଇପାରନ୍ତି ନାହିଁ । ତେଣୁ ଉକ୍ତ ପରିବର୍ତ୍ତନ ହୁଏତ କ୍ଷଣିକ ଉତ୍ତେଜନା ଅଥବା ବୌଦ୍ଧିକ ସନ୍ତୁଳନ ସୃଷ୍ଟି କରିପାରେ, ମାତ୍ର ଏହା ମଣିଷର ଅନ୍ତରାତ୍ମାକୁ ଜୟ କରିବାରେ ବିଫଳ ହୁଏ । ତାକୁ ହିଁ ଲକ୍ଷ୍ୟକରି ମେରିଡିଥ୍ ସେଦିନ ଘୋଷଣା କରିଥିଲେ : ନିଜ ଭିତରେ ଲୁଚି ରହିଥିବା ମିଥ୍ୟାଚାର ଆମକୁ ପ୍ରତାରିତ କରିଛି (We are betrayed by what is false within) । ତେବେ ଏଇ ମିଥ୍ୟାଚାରରୁ ନିଜକୁ ମୁକ୍ତକରି ଗୋଟିଏ ସୁନ୍ଦର ସମାଜର ପରିକଳ୍ପନା କରିବା ଆଦୌ ନିରର୍ଥକ ମନେ ହେବନାହିଁ । ମାତ୍ର ସେଥିପାଇଁ ପୁନଶ୍ଚ ଆବଶ୍ୟକ ହେବ ମାନସିକ ପ୍ରସ୍ତୁତି । ବିଶିଷ୍ଟ ଲେଖକ ଜି.କେ.ଚେଷ୍ଟରଟନ ଯଥାର୍ଥରେ ଥରେ କହିଥିଲେ: ''ମଣିଷ ମାନଙ୍କ ପାଇଁ ସୁବର୍ଣ୍ଣ ଯୁଗଟି ନିକଟତର ହେଇ ପାରିବ ଯଦି ସେମାନେ ଗୋଟିଏ ମୁହୂର୍ତ୍ତ ପାଇଁ ସୁନା କଥା ପାଶୋରି ଦେବେ'' (The golden age only comes to men when they have, if only for a moment, forgotten gold) । ପରିବର୍ତ୍ତନକୁ ପ୍ରତିରୋଧ କରିବାରେ ଥିବା କଠୋରତା ପ୍ରତିଏହାଥିଲା ତାଚ୍ଛଲ୍ୟ ମାତ୍ର ।

ଅନୁରୂପ ଅବସ୍ଥାକୁ ବୁଝିବା ପାଇଁ ଏଠି ଗଳ୍ପଟିଏର ପୁନରାବୃତ୍ତି କରାଯାଇପାରେ । ଥରେ ଗୋଟିଏ ଗାଁରେ ଆକସ୍ମିକ ଦୁର୍ଘଟଣାରେ ଗ୍ରାମର ମୁଖିଆଙ୍କର ଗୋଡଟି ଭାଙ୍ଗିଗଲା । ଆରୋଗ୍ୟର ସମ୍ଭାବନା କ୍ଷୀଣ ଥିବାରୁ ସେ ଆଶାବାଡିର ସାହାଯ୍ୟ ନେଇ ଚାଲିବା ଆରମ୍ଭ କରିଦେଲେ । ସମୟାନୁକ୍ରମେ ସେ ଆଶାବାଡି ସାହାଯ୍ୟରେ ଏତେ ଅଭ୍ୟସ୍ତ ହୋଇଗଲେ ଯେ - ତା' ସାହାଯ୍ୟରେ ସେ ନାଚିବାଠାରୁ ଆରମ୍ଭ କରି ଚକା ଭଉଁରୀ ଖେଳ ମଧ୍ୟ ଖେଳିପାରିଲେ । ତାଙ୍କର ଏଇ ସାହସିକତାକୁ କାଳାତୀତ କରିବା ଉଦ୍ଦେଶ୍ୟରେ ସେ ତାଙ୍କ ପିଲାମାନଙ୍କୁ ମଧ୍ୟ ଆଶା ବାଡି ଧରି ଚାଲିବା ଶିଖାଇ ଦେଲେ । ଧୀରେ ଧୀରେ ଏଇ କାଇଦାଟି ସେମାନଙ୍କ ଜୀବନ ଯାପନର ଏକ ଅଙ୍ଗ ହେଇଗଲା । ପରେ ପରେ ପୁରୁଷାନୁକ୍ରମିକ ଭାବେ ଉକ୍ତ ଗ୍ରାମର ସମସ୍ତ ବ୍ୟକ୍ତି ଆଶାବାଡି ଧରି ଚାଲିବା ଆରମ୍ଭ କଲେ । ଥରେ ଜଣେ ଯୁବକ କିନ୍ତୁ ସମସ୍ତଙ୍କୁ ପ୍ରଶ୍ନ କଲା: ଭଗବାନ ଯେତେବେଳେ ଆମକୁ ଦୁଇଟି ଶକ୍ତିଶାଳୀ ଗୋଡ ଦେଇଛନ୍ତି, ସେତେବେଳେ ଏଇ ଆଶାବାଡି ଉପରେ ଭରାଦେଇ ଆମେ ଚାଲିବାର ଆବଶ୍ୟକତା କ'ଣ ଅଛି ?

ଯୁବକଟିର ଏଇ ଉକ୍ତିକୁ ଗ୍ରାମବାସୀମାନେ ନାପସନ୍ଦ କରୁଥିଲେ । ସେମାନେ ତାକୁ

ପାନେ ଉଚିତ ଶିକ୍ଷା ଦେବା ପାଇଁ ଦିନେ ସକାଳେ ଗ୍ରାମାନ୍ତ ମନ୍ଦିର ସାମ୍ନାରେ ସଭା ଡକାଇଲେ । ଯୁବକଟି ଏଥର ଗ୍ରାମବାସୀମାନଙ୍କର ସାମ୍ନାରେ ସିଧାଠିଆ ହେଲା ଏବଂ ନିଜେ ଭରା ଦେଇଥିବା ଆଶାବାଡି ଦୁଇଟିକୁ ନିଜ କାଖରୁ ହଟାଇଦେଲା । ଯୁବକଟି ତତ୍‌କ୍ଷଣାତ ଭୂମି ଉପରେ ପଡିଯିବାର ଦେଖି ଗ୍ରାମବାସୀମାନେ ତାଚ୍ଛଲ୍ୟରେ ହସି ଉଠିଲେ ଏବଂ ଥଟ୍ଟା କରିବାରେ ଲାଗିଲେ । ସେମାନେ ଏପରି କରି ପ୍ରମାଣ କରିବାକୁ ଚାହୁଁଥିଲେ ଯେ ଆଶାବାଡି ବିନା ମଣିଷ ଚାଲିପାରିବ ନାହିଁ ।

ଯୁଗ ଯୁଗ ଧରି ଚାଲିଆସିଥିବା ଧାରା ଅଥବା ମୂଲ୍ୟବୋଧକୁ ଏତେ ସହଜରେ ଭାଙ୍ଗିଦେଇ ହେବ ନାହିଁ- ତାହା ହିଁ ଏଇ ଗଳ୍ପଟିର ମୁଖ୍ୟ ଆବେଦନ । କୌଣସି ପରିବର୍ତ୍ତନ ଏତେ ସହଜସାଧ୍ୟ ନୁହେଁ ।

ଯେଉଁ ବ୍ୟକ୍ତିମାନେ ଆଶାବାଡି ବ୍ୟତୀତ ଚାଲିବା ସମ୍ଭବ ନୁହେଁ ବୋଲି ଧାରଣା କରିଥିଲେ ସେମାନଙ୍କୁ ଆମେ ଥୋରୁଙ୍କ ଉକ୍ତିଟି ମନେ ପକେଇଦେବା ଠିକ୍ ହେବ : ଘଟଣାର ପରିବର୍ତ୍ତନ ହୁଏ ନାହିଁ, ଆମେ ବଦଳିଯାଉ, ''(Things do not change, we change) ।

ପରିବର୍ତ୍ତନର ସ୍ୱାଗତ ହିଁ ମଣିଷ ପାଇଁ ଆଶୀର୍ବାଦ ବୋଲି ଧରାଯାଇପାରେ । ସୃଷ୍ଟିର ବିକାଶ ପାଇଁ ଏହା ଯେପରି ଅପରିହାର୍ଯ୍ୟ । କବି ଟେନିସନ୍‌ଙ୍କ ଭାଷାରେ: ''ପୁରୁଣା ଧାରା ବଦଳିଯାଏ/ନୂତନ ତା' ଜାଗା ବାଛିନିଏ/ଅନେକ ବାଟରେ ଈଶ୍ୱର /ନିଜକୁ ସ୍ୱୟଂ ସଂପୂର୍ଣ୍ଣ କରିଥାନ୍ତି /ତା'ନ ହେଲେ ଗୋଟିଏ ଉତ୍ତର ପରମ୍ପରା/ସାରାବିଶ୍ୱକୁ କଳୁଷିତ କରିଦେବ''(The old order changeth, yielding place to new/And God fulfils himself in many ways/Lest one good custom should corrupt the world)

ଆସନ୍ତୁ, ଏଥର ପରିବର୍ତ୍ତନର ଆବାହନୀ ସଙ୍ଗୀତ ଗାଇବା ।



# ଭାରତୀୟ ରେଳବାଇ ଓ ମଜା

**ଯେ**ତେଦୂର ମନେପଡୁଛି ସେଦିନ ଥିଲା ରବିବାର । ୧୯୮୮ ମସିହାର ଖରାଦିନ । ଏବର ଅଂଶୁଘାତର ଆତଙ୍କ ଯଦିଓ ନଥିଲା ତେବେ ସେତେବେଳେ ଯେ ସୂର୍ଯ୍ୟଦେବ ନିର୍ଦ୍ଦୟ ନଥିଲେ ଏକଥା କହି ହେବନାହିଁ । ବାଲେଶ୍ୱରରୁ ଦିଲ୍ଲୀ ଯିବାର ଥାଏ ଏକ ବ୍ୟକ୍ତିଗତ କାମରେ । ଷ୍ଟେସନ୍‌ରେ ଟ୍ରେନ୍‌କୁ ଅପେକ୍ଷା କରିଥାଏ । ଡହ ଡହ ଖରା ସାଙ୍ଗକୁ ଝାଞ୍ଜି ପବନ ପିଟୁଥାଏ । ମଧ୍ୟବୟସ୍କ ଭଦ୍ରବ୍ୟକ୍ତି ଜଣକ ପାଖକୁ ଆସି ମୋତେ ସ୍ୱାଗତ କରିବା ଭଙ୍ଗୀରେ କହିଲେ : ଆପଣଙ୍କ ଟ୍ରେନ୍‌ଟି ପାଞ୍ଚ ଘଣ୍ଟା ବିଳମ୍ବରେ ଆସିବ ।'

: 'ଆପଣ କିପରି ଜାଣିଲେ ମୁଁ କୋଉ ଟ୍ରେନ୍‌କୁ ଅପେକ୍ଷା କରିଛି ?' ମୁଁ ସନ୍ଦେହରେ ପ୍ରଶ୍ନ କଲି' । ଭଦ୍ରବ୍ୟକ୍ତି ଜଣକ ହସିଲେ ଓ କହିଲେ : ନିର୍ଦ୍ଧାରିତ ଟ୍ରେନ୍‌ଟି ଆସିବାର ପ୍ରାୟ ଏକଘଣ୍ଟା କିମ୍ବା ଅଧଘଣ୍ଟା ପୂର୍ବରୁ ଯାତ୍ରୀମାନେ ପ୍ଲାଟ୍‌ଫର୍ମରେ ପହଞ୍ଚୁଥା'ନ୍ତି । ବର୍ତ୍ତମାନ ମଧ୍ୟାହ୍ନ ବାରଟା ଏବଂ ଗୋଟାଏ ବେଳେ ପହଞ୍ଚୁଥିବା ଡ଼ି.ଏମ୍.ୟୁ. ଛଡା ନିକଟ ଭବିଷ୍ୟତରେ ଏଠି କୌଣସି ଗାଡ଼ି ଅଟକିବ ନାହିଁ ।' ଏତକ କହି ସାରିବା ପରେ ଭଦ୍ରବ୍ୟକ୍ତି ତାଙ୍କର ପାନଖିଆ କଳାଦାନ୍ତ ଗୁଡ଼ିକ ଦେଖାଇ ହସିଲେ ନିଶବ୍ଦରେ ।

ଭଦ୍ରବ୍ୟକ୍ତିଙ୍କ ବୁଦ୍ଧିଦୀପ୍ତ ତର୍ଜମାକୁ ମୁଁ ଉପଭୋଗ କଲି ସତ ମାତ୍ର ଯେଉଁ ଦୁଃସମ୍ବାଦଟି ସେ ମୋତେ ପରିବେଷଣ କଲେ ସେଥିଯୋଗୁଁ ମୁଁ ବ୍ୟଥିତ ହେବା ଛଡ଼ା ଗତ୍ୟନ୍ତର ନଥିଲା । ଏହାଛଡ଼ା ଆଉ କ'ଣ କରାଯାଇପାରେ ? ଭାରତୀୟ ରେଳବାଇର ଟ୍ରେନ୍‌ଗୁଡ଼ିକ କାହିଁକି ଏପରି ଅହେତୁକ ବିଳମ୍ବରେ ଯାତାୟତ କରେ ତା'ର କାରଣ ଯଦିଓ ଏ ଲେଖକକୁ ଊଣା ଅଧିକେ ଜଣା, ମାତ୍ର ତାହା ଯେ ଅସଲ ସମସ୍ୟାର ସମାଧାନ ପାଇଁ ଆଦୌ ସହାୟକ ହେବ ନାହିଁ ତାହାହିଁ ଦୁଃଖଦ ବ୍ୟାପାର । ଖବରକାଗଜମାନଙ୍କର ପୃଷ୍ଠା ମଣ୍ଡନ କରି ଅନେକ ସମୟରେ ଏଇ ବିଳମ୍ବଜନିତ ଟ୍ରେନ୍ ଯାତାୟତ ଯୋଗୁଁ ରେଳବାଇ କର୍ତ୍ତୃପକ୍ଷଙ୍କୁ କଟୁ ସମାଲୋଚନାର ଶରବ୍ୟ ହୋଇଥିବା ମଧ୍ୟ ଦୃଷ୍ଟିକୁ ଆସିଛି । ମାତ୍ର ମୋତେ ଯେତେ ମାଠିବୁ ମାଠ଼ ନ୍ୟାୟରେ ଘଟଣାଟି ଘଟି ଚାଲିଛି ଓ ଚାଲିଥିବ ମଧ୍ୟ । ସରକାର କିମ୍ବା ତାଙ୍କର ନୀତି ବଦଳିବା ସହ ଏହାର (ବିଳମ୍ବ ହେବାର) ଯେପରି କୌଣସି ସଂପର୍କ ନାହିଁ । ତା'ଛଡା, ଏଇ ବିଳମ୍ବକୁ ଭାରତୀୟମାନେ ପ୍ରାୟତଃ ସହ୍ୟ କରିବା ସହ ଏହାକୁ ଜୀବନର ଗୋଟିଏ ସାଧାରଣ ଘଟଣା ଭାବେ ଧରି ନେଇଛନ୍ତି କେଉଁକାଳରୁ ଯେମିତି ।

ହାତ ଘଣ୍ଟାକୁ ଚାହିଁଲି । ଖୁବ୍ କମ୍‌ରେ ସାଢ଼େ ପାଞ୍ଚଘଣ୍ଟା କ'ଣ କରାଯାଇପାରେ ଏ ଅସହ୍ୟ ଗରମରେ ? ମଗଜରେ ଆଇଡ଼ିଆଟେ ଢୁକିଲା । ଅଗତ୍ୟା ଷ୍ଟେସନ୍ ବାହାରକୁ ଆସି ରିକ୍‌ସାଟିଏ ଧରିଲି ଓ ସହଦେବ ଖୁଣ୍ଟାରେ ପହଞ୍ଚିଲି । ରିକ୍‌ସାବାଲାକୁ 'କେଉଁ ଜାଗାରେ ନିର୍ଦ୍ଦିଷ୍ଟ ଭାବେ ଓହ୍ଲାଇବି' ବୋଲି ପଚାରିଲା ମାତ୍ର ମୋତେ ନିର୍ଦ୍ଦିଷ୍ଟ ଠିକଣାଟି ହିଁ ଜଣାଇଥିଲା । ବାଧ ହୋଇ ଗୋଟେ ଛକ ଉପରେ ଓହ୍ଲାଇ ରିକ୍‌ସାଟିକୁ ବିଦା କଲି । ଛତାଟିଏ ଧରି ଜଣେ ଯୁବକ ଆସୁଥିଲେ । ତାଙ୍କୁ ପଚାରିଲି ଟିକିଏ ଥତ୍‌ମତ୍ ହୋଇ -

:ଏଇଟା ସହଦେବଖୁଣ୍ଟା ତ ?

: ହିଁ । ସେ ମୁଣ୍ଡ ନାଡ଼ିଲେ ଓ ମୋତେ ଓଲଟା ପ୍ରଶ୍ନ କରି ବସିଲେ : କୋଉଠିକି ଯିବେ ?

: ବସନ୍ତ ଶତପଥୀଙ୍କ ଘରକୁ' । ମୁଁ କହିଲି ଯୁବକ ଜଣକ ଟିକିଏ ଭାବିଲେ ଓ ପୁଣି କହିଲେ

: ସେ କ'ଣ କରନ୍ତି ଓ ଆଉ ଦେଖିବାକୁ କେମିତି ?

ବସନ୍ତ ଶତପଥୀଙ୍କୁ ମୁଁ ଆଗରୁ କେବେ ଦେଖିନାହିଁ । କେବଳ ତାଙ୍କ ଗଳ୍ପ ଓ ଆଲୋଚନା ପଢ଼ିଛି ଯାହା । ବାଧ ହୋଇ ଯୁବକଙ୍କୁ ସେ କଥାହିଁ କହିଲି । ଏଠାରେ କୌଣସି ଗାଳ୍ପିକଙ୍କୁ ସେ ଜାଣନ୍ତି ନାହିଁ ଅଥବା ସେପରି ବ୍ୟକ୍ତି ଏଠି କେହି ନାହାଁନ୍ତି ବୋଲି କହି ଯୁବକ ତାଙ୍କ ବାଟ ଧରିଲେ । ମାତ୍ର କଥା ଛଳରେ ସୂଚନା ଦେଲେ ଯେ ସେ ମଧ ସହଦେବଖୁଣ୍ଟାରେ ଦୀର୍ଘ ବର୍ଷ ଧରି ରହୁଛନ୍ତି ।

ମାତ୍ର ମୁଁ ତାଙ୍କୁ ବିଶ୍ୱାସ କଲି ନାହିଁ । କାରଣ ସମସ୍ତ ସମ୍ଭ୍ରାନ୍ତ ଓଡ଼ିଆ ପ୍ରତପତ୍ରିକାରେ ବସନ୍ତ ଶତପଥୀଙ୍କ ପ୍ରତିଟି ପ୍ରକାଶିତ ଗଳ୍ପ ଶେଷରେ ସହଦେବଖୁଣ୍ଟାର ଠିକଣା ହିଁ ରହୁଥିଲା । ଯା' ହେଉ ଦୁଇ ତିନିଜଣଙ୍କୁ ପଚାରିପଚାରି ମୁଁ ଶେଷରେ ବସନ୍ତ ଶତପଥୀଙ୍କ ଘର ପାଇଗଲି । ଗୋଟିଏ ଭଡ଼ାଘରେ ନିଜ ଚାକିରିଆ ପୁଅଙ୍କ ପାଖରେ ସେ ରହୁଥିଲେ । ସଦ୍ୟ ଚୂନ ଧଉଳା ଲମ୍ବା ଘରଟି ବାହାରୁ ଗୋଟିଏ ସ୍କୁଲ ପରି ପ୍ରତୀୟମାନ ହେଉଥିଲା । କବାଟ ଓ ଝରକାମାନଙ୍କରେ ଶୁଆପକ୍ଷୀ ପରି ନୀଳ ରଙ୍ଗ ବୋଳା ଯାଇଥିଲା । ପରିଚାରକଟି ଡ୍ରଇଂ ରୁମ୍‌ରେ ବସାଇ ଦେଇ ଚାଲିଗଲା ଘର ଭିତରକୁ । ଅଳ୍ପ ସମୟ ପରେ ବସନ୍ତ ଶତପଥୀ ଆସି ପହଞ୍ଚିଲେ । ଅନୁମାନ ବୟସ ପଞ୍ଚଷଠି ଉପରେ । ପତଳା ଚେହେରା ସାଙ୍ଗକୁ କୃଷ୍ଣବର୍ଣ୍ଣ ଶରୀର । ମୁଁ ନମସ୍କାର କରି ମୋର ପରିଚୟ ଦେବାମାତ୍ରେ ଧାରେ ହସ ତାଙ୍କ ଓଠ ଉପରେ ଖେଳିଗଲା, କାରଣ ତିନି ବର୍ଷ ତଳେ ବସନ୍ତ ବାବୁଙ୍କ ସହ ମୋର କିଛି ଚିଠିପତ୍ର ଆଦାନ ପ୍ରଦାନ ହୋଇଥିଲା ଓ ମୁଁ

ସେତେବେଳେ ତାଙ୍କ ଗଳ୍ପ 'ଭାଲୁ ଶିକାର'କୁ ବେତାର ନାଟ୍ୟରୂପ ଦେଇଥିଲି ଯାହା ପରବର୍ତ୍ତୀ ସମୟରେ ୧୯୮୬ ମସିହାରେ ଆକାଶବାଣୀରୁ ପ୍ରସାରିତ ହୋଇଥିଲା । ଗଳ୍ପଟିର ଅନ୍ତଃସ୍ୱର ମୁଁ ଠିକ୍ ଧରିପାରିଥିବା ସ୍ୱୀକାର କରି ଏକ ପତ୍ର ଲେଖିଥିଲେ । ପରେ ଉକ୍ତ ଗଳ୍ପଟି ଜ୍ଞାନପୀଠ ପ୍ରକାଶନ ତରଫରୁ ହିନ୍ଦୀରେ ଅନୁଦିତ ହୋଇ ପ୍ରକାଶ ପାଇଥିଲା ବୋଲି ଶ୍ରୀ ଶତପଥୀ ପ୍ରକାଶ କଲେ । ବସନ୍ତ ଶତପଥୀଙ୍କ ଗଳ୍ପରେ କେବଳ ଯାଦୁ ନଥିଲା, କଥା କହିବା ବେଳେ ତାଙ୍କ ଦ୍ୱାରା ଶାଣିତ ବ୍ୟଙ୍ଗୋକ୍ତି ପ୍ରୟୋଗ ବେଶ୍ ଆହ୍ଲାଦିତ କରେ ଶ୍ରୋତାକୁ । ଏକଥା ତାଙ୍କୁ ଥରେ ଯିଏ ମିଶିଚି, ସେ ଅନୁଭବ କରିଛି ।

ଗୋଟାଏ ଲହରରେ ସେ ଗପ ପରେ ଗପ କହିପାରନ୍ତି । ଏ ସଂପର୍କରେ ଅନେକବାର ପୂର୍ବରୁ ସୂଚନା ପାଇଥିଲି ବିଶିଷ୍ଟ କବି ବ୍ରଜନାଥ ରଥ ଏବଂ ନାଟ୍ୟକାର କୁଞ୍ଜରାୟଙ୍କଠାରୁ । ଗପ କହିବାବେଳେ ଆଦୌ ଥକି ପଡ଼ନ୍ତି ନାହିଁ ସେ । ଫକୀର ମୋହନଙ୍କ ପରି ପରିଣତ ବୟସରେ ଲେଖାଲେଖି ଆରମ୍ଭ କରିଥିଲେ ସେ । ସେଦିନ ମଧ୍ୟାହ୍ନରେ ସେ ମୋତେ ଶୁଣାଇଲେ ରସାଳ ଗପଟିଏ : ଯାହାର ନାଁ ଥିଲା 'ମକା' । ଚାକିରୀରୁ ଅବସର ପରେ ଗଳ୍ପର ନାୟକଟି (ସମ୍ଭବତଃ ବସନ୍ତ ବାବୁ ନିଜେ ହିଁ ତା'ର ଚରିତ୍ର ଥିଲେ ) କିପରି ପିଲାଦିନର ସ୍ମୃତିରେ ମଗ୍ନ ହୋଇ ମକା ଖାଇବାର ଅନୁଭବଟିକୁ ଦୋହରାଇବାକୁ ଯାଇ ସହରରୁ ନିଜ ଗାଁରେ ପହଞ୍ଚିଛି (ମୟୂରଭଞ୍ଜର ପନ୍ଧାଡ଼ ଲେଖକଙ୍କ ଗାଁ) ଓ ଗାଁର ଭିନ୍ନ ଭିନ୍ନ ଚରିତ୍ରଙ୍କ ସଂଘର୍ଷରେ ଆସିଛି, ଏପରିକି ନିଜ ଭାଉଜଙ୍କ ସହ ଥଟ୍ଟା ତାମସା ବେଳେ ମକାକୁ ଯୌନପ୍ରତୀକ ଭାବେ ଗହଣ କରି ରଙ୍ଗରସ କରିଛନ୍ତିତା'ର ମାର୍ମିକ ବର୍ଣ୍ଣନା କରି ଚାଲିଥା'ନ୍ତି ଶ୍ରୀ ଶତପଥୀ । ଗଳ୍ପର ଶେଷ ଆଡ଼କୁ କିପରି ନାୟକଙ୍କ ଘର ପୁରୁଣା ଚାକର ଆଣି ତାଙ୍କୁ 'ମକା' ଦେଇଛି ଓ ଗଳ୍ପର ଚରିତ୍ର ଖୁସୀରେ ନାଚି ଉଠିଛନ୍ତି-ତାହାହିଁ କହୁଥା'ନ୍ତି ସେ । ତିନିଘଣ୍ଟାକାଳ ତାଙ୍କ ସହ ମୋର ଆଲୋଚନା । ତାହାହିଁ ବସନ୍ତ ବାବୁଙ୍କ ସହ ଥିଲା ପ୍ରଥମ ଓ ଶେଷ ସାକ୍ଷାତ୍କାର । ଜାଣେନା, ତାଙ୍କର ମକା ଗଳ୍ପଟି ସେ ଲେଖିଥିଲେ ନା ନାହିଁ । ଅଥବା ତାହା ପ୍ରକାଶିତ ହେଲା କି ନାହିଁ । ତେବେ ଭାରତୀୟ ରେଳବାଇକୁ ସେଦିନ ମୁଁ କୃତଜ୍ଞତା ଜଣାଇଲି ଏପରି ଏକ ଜୀବନ୍ତ ଗଳ୍ପର ଗନ୍ତାଘରକୁ ଭେଟିଥିବା ଯୋଗୁଁ ।



# ଜଣେ ଚେସ୍ ଖେଳାଳିଙ୍କ କଥା

ଜୁନ୍ ୨୧ ତାରିଖ ହେଉଛି ପ୍ରାତଃସ୍ମରଣୀୟ ଔପନ୍ୟାସିକ ତଥା ଗାଳ୍ପିକ ସୁରେନ୍ଦ୍ର ମହାନ୍ତିଙ୍କ ସ୍ୱନକ୍ଷତ୍ର ଦିବସ, ଜୀବିତ ଥିଲେ ଏବର୍ଷ ତାଙ୍କୁ ସତସ୍ତରୀ ବର୍ଷ ହୋଇଥା'ନ୍ତା । କୌଣସି ରାଜନୈତିକ ବଡ଼ନେତା ନଥାଇ କିମ୍ବା କୌଣସି ପୃଷ୍ଠପୋଷକ ଅଥବା ଅନୁଷ୍ଠାନର କର୍ମକର୍ତ୍ତା ନଥାଇବି ତାଙ୍କର ଜନ୍ମଦିନ ପାଳନ ଉପଲକ୍ଷେ ସଭା ସମିତିମାନ ହେବା ଖୁବ୍ ଆନନ୍ଦର କଥା । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗକୁ ସେ ଯେପରି ଋଦ୍ଧିମନ୍ତ କରିଛନ୍ତି ତାହା କ୍ୱଚିତ୍ ଅନ୍ୟତ୍ର ଦେଖାଯାଏ । ସେସବୁ କୃତିର ମୂଲ୍ୟାୟନ ପାଇଁ ଏହା ପ୍ରକୃଷ୍ଟ କ୍ଷେତ୍ର ହୋଇନଥିବାରୁ ଏ ଲେଖକ ତା' ଭିତରକୁ ପ୍ରବେଶ କରୁନାହିଁ ।

ତେବେ କେଉଁଠି କେଉଁଠି ସଭାସମିତିରେ ଅଲୋଚକମାନେ 'ସୁରେନ୍ଦ୍ର-ସାହିତ୍ୟର ପ୍ରକୃତ ମୂଲ୍ୟାୟନ ଏ ଯାବତ୍ ହୋଇନାହିଁ' ବୋଲି ଦୁଃଖପ୍ରକାଶ କରି ଖବରକାଗଜରେ ବିବୃତିମାନ ପ୍ରକାଶ କରୁଛନ୍ତି । ବିବୃତି-ପ୍ରିୟ ଏଇ ଗୋଷ୍ଠି ଭିତରେ ଅଛନ୍ତି ଅଧିକାଂଶ ଓଡ଼ିଆ ଅଧ୍ୟାପକ । ସେମାନେ ଏଇ କାମଟି ନିଜେ ନକରି ଅନ୍ୟକୁ କାହିଁକି ଦୋଷ ଦିଅନ୍ତି ସେ କଥା ସେମାନେହିଁ କହିପାରିବେ । ଅବଶ୍ୟ ସେମାନେ ସାଧାରଣତଃ ଅଧିକାଂଶ ଲେଖକଙ୍କ ସଂପର୍କରେ ଏପରି ଦୁଃଖପ୍ରକାଶ କରି ନିଜର ନାମ ଛପାଇବାକୁ ପ୍ରୟାସ କରନ୍ତି । ସେମାନଙ୍କର ଏଇ ବିବୃତିଦ୍ୱାରା ସାହିତ୍ୟ ଅଥବା ଭାଷାର ହିତ ମଧ୍ୟ ସାଧନ ହୁଏନାହିଁ ବୋଲି ସମସ୍ତେ ଅନୁଭବ କରନ୍ତି ।

ଓଡ଼ିଆ ସାହିତ୍ୟ ଓ ଜୀବନ ପ୍ରଣାଳୀରେ ସୁରେନ୍ଦ୍ର ମହାନ୍ତି ଅନେକ ପ୍ରାଚୀନ ପରମ୍ପରାକୁ ଭାଙ୍ଗି ନୂତନତାର ମନ୍ଦିର ଗଢ଼ି ପାରିଥିଲେ । ଜୀବନରେ ଯଦିବା ସେ କାହାକୁ ସବୁଠୁ ବେଶୀ ଘୃଣା କରୁଥିଲେ, ତା' ହେଉଛି-ଛଳନା । ତାଙ୍କର ସେଇ ନିଷ୍କପଟ ଜୀବନର ରାଶିରାଶି ବର୍ଣ୍ଣନା ରହିଛି ତାଙ୍କ ଆତ୍ମଜୀବନ ଚରିତ 'ପଥ ଓ ପୃଥିବୀ'ରେ । ମଧୁ ମହାନ୍ତିଙ୍କର ସେ ଥିଲେ ସାନ ଭାଇ । ମଧୁ ମହାନ୍ତି ଯେତେବେଳେ ଆୟକର ବିଭାଗର ପଦସ୍ଥ ଚାକିରୀ ଛାଡ଼ି 'ଅବଜରଭର୍' ଖବରକାଗଜ ପ୍ରକାଶ କରୁଥା'ନ୍ତି, ଠିକ୍ ସେଇ ସମୟରେ ସୁରେନ୍ଦ୍ର ମହାନ୍ତି ମଧ୍ୟ ନିଜ ଉପରିସ୍ଥ ହାକିମଙ୍କୁ ଦୁର୍ବ୍ୟବହାର କରିବାପରେ ଚାକିରୀରୁ ଇସ୍ତଫା ଦେଇଥାନ୍ତି । ପରେ ଜଣେ ଶୁଭେଚ୍ଛୁଙ୍କ ଯୋଗୁଁ ତାଙ୍କର ସାକ୍ଷାତ୍ ହୁଏ ମଧୁ ମହାନ୍ତିଙ୍କ ସହ । ପ୍ରଥମ ଦେଖାରେ ମଧୁ ମହାନ୍ତି ତାଙ୍କୁ ପ୍ରଶ୍ନ କଲେ : ତୁମେ ତାହେଲେ ସୁରେନ୍ଦ୍ର ନାଥ ମହାନ୍ତି ? ସଙ୍ଗେସଙ୍ଗେ ସୁରେନ୍ଦ୍ରଙ୍କ ଉତ୍ତର ମିଳିଲା : ମୁଁ ଅନାଥ ।' ପରିହାସଛଳରେ କହିଲେବି ଏହାର ଦୁଇଟି ଅର୍ଥ ଥିଲା। ପ୍ରଥମତଃ, ସୁରେନ୍ଦ୍ର ପାଖରେ ସେ 'ନାଥ' ଲଗାନ୍ତି ନାହିଁ । ତେଣୁ ଅ-ନାଥ । ଦ୍ୱିତୀୟଟି,

ଚାକରୀ ଛାଡ଼ିବା ପରେ ତାଙ୍କ ପାଖରେ ବଞ୍ଚିବାର ଅନ୍ୟପନ୍ଥା ନାହିଁ, ତେଣୁ ସେ ଅନାଥ (ଗରିବ) । ମଧୁ ମହାନ୍ତି ବି କମ୍ ଅବାଗିଆ ଲୋକ ନଥିଲେ ।

: ତୁମେ ଚେସ୍ ଖେଳି ଜାଣିଛ ?' ପଚାରିଲେ ସେ ।

କାହିକି ? : ସୁରେନ୍ଦ୍ରଙ୍କ ପ୍ରଶ୍ନ ମଧୁ ମହାନ୍ତିଙ୍କୁ ।

: ଚେସ୍ ଖେଳରେ ଜିତିଲେ, ଏଠି ଚାକିରୀ ପାଇବ, ସର୍ତ୍ତ ରଖିଲେ ସେ । ସେଇଆ ହେଲା । ଚେସ୍ ଖେଳରେ ସେଦିନ ସୁରେନ୍ଦ୍ର ଜିତି କେବଳ ମଧୁ ମହାନ୍ତିଙ୍କ ସଂସ୍ଥାରେ ଚାକିରୀ ପାଇନଥିଲେ , ପରେପରେ ମଧୁ ମହାନ୍ତି ତାଙ୍କ କନ୍ୟାଙ୍କୁ ମଧ ସୁରେନ୍ଦ୍ରଙ୍କୁ ଅର୍ପଣ କରିବେ ବୋଲି ଉଦ୍‌ଘୋଷଣା କରିଥିଲେ ।

ସାମାଜିକ ଚଳଣିରେ ଯଦିଓ ଦୁହେଁ ଶ୍ୱଶୁର ଓ ଜ୍ୱାଇଁ ଭାବେ ଜଣାଥିଲେ ମାତ୍ର ମାନସିକ ସ୍ତରରେ ଦୁହେଁ ଥିଲେ ଘନିଷ୍ଠ ବନ୍ଧୁ ପରି । ମଣି-କାଞ୍ଚନର ସଂପର୍କ । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସଂପର୍କରେ ଦୁଇଟି ଅମୂଲ୍ୟ ଉପନ୍ୟାସ ଲେଖିବା ପାଇଁ ସୁରେନ୍ଦ୍ରଙ୍କୁ କେବଳ ପ୍ରେରଣା ଯୋଗାଇ ନଥିଲେ ବରଂ ତାଙ୍କୁ ଆବଶ୍ୟକୀୟ କାଗଜପତ୍ର ଓ ବିବରଣୀ ଯୋଗାଇବାରେ ସାହାଯ୍ୟ କରିଥଲେ ମଧୁ ମହାନ୍ତି । ମଧୁ ମହାନ୍ତିଙ୍କ ପିତା ରଘୁନାଥ ମହାନ୍ତି ଉତ୍କଳଗୌରବଙ୍କ ପାଖରେ ଜଣେ ମୁକ୍ତିଆର୍ ଭାବେ କାମ କରୁଥିଲେ । ସୌଭାଗ୍ୟ କ୍ରମେ ମଧୁ ମହାନ୍ତିଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ଅନୁଭୂତିହିଁ ସୁରେନ୍ଦ୍ରଙ୍କୁଏଇ ଉପନ୍ୟାସ ଲେଖିବାରେ ସହାୟକ ହୋଇଥିଲା ବୋଲି ଏ ଲେଖକଙ୍କୁ ମଧୁ ମହାନ୍ତି ତାଙ୍କ ଜୀବନ କାଳରେ ଅନେକବାର କହିଛନ୍ତି । ତେବେ ସୁରେନ୍ଦ୍ରଙ୍କ ଛଳନାହୀନ ଜୀବନର କେତୋଟି ଘଟଣା ଏଠି କୁହାଯାଇପାରେ । ଥରେ ମଧୁ ଏବଂ ସୁରେନ୍ଦ୍ର ମହାନ୍ତି ପୁରୀ ମନ୍ଦିର ଦର୍ଶନ ପରେ (ସମ୍ଭବତଃ ନୀଳଶୈଳ ରଚନା ପୂର୍ବରୁ) ଆନନ୍ଦବଜାରରେ ବସି ଚିଡ଼ି (ସିଗାରେଟ୍‌ରେ ଗଞ୍ଜେଇ ଭର୍ତ୍ତି କରି ପୁରୀରେ ଟାଣୁଥିବା ଧଳା ପିକା ସଦୃଶ ଏବଂ ବ୍ରହ୍ମପୁରରେ ଏହାକୁ 'ଜିକ୍‌ସ୍' ମଧ କୁହାଯାଏ) ମାରୁଥିବା ସମୟରେ ସ୍ଥାନୀୟ ପଣ୍ଡାମାନଙ୍କଦ୍ୱାରା ଆକ୍ରମିତ ହୋଇଥିଲେ । ପରବର୍ତ୍ତୀ ସମୟରେ ଶ୍ରୀମନ୍ଦିରର ତତ୍କାଳୀନ ପ୍ରଶାସକଙ୍କ ସହ ମନ୍ଦିରର ନଥିପତ୍ରକୁ ନେଇ ଯୁକ୍ତି ଓ ପ୍ରତିଯୁକ୍ତି ପରେ ସେମାନଙ୍କୁ ସମ୍ମାନର ସହ ମନ୍ଦିର ବାହାରକୁ ଅଣାଯାଇଥିଲା ।

ଆଉଥରକର ଘଟଣା, ହଠାତ୍ ମଧୁ ମହାନ୍ତିଙ୍କ ଷ୍ଟୋନି ରୋଡ୍‌ସ୍ଥ ବାସଭବନର ଭାଗବତ ଟୁଙ୍ଗୀ ପ୍ରକୋଷ୍ଠରେ ଟେଲିଫୋନ୍‌ରେ ଖବର ପାଇ ଆସି ପହଞ୍ଚିଲେ ମଧୁ ମହାନ୍ତିଙ୍କ ଭଣଜା ଗୁରୁ ବାବୁ । ସମୟ ରାତି ଦୁଇଟା । ମାମୁଁଙ୍କ ଫୋନ୍ କରିବାର କାରଣ ପଚାରିବାରେ ମଧୁ ମହାନ୍ତି ଗୋଟିଏ ମଦ ବୋତଲ ଦେଖାଇ କହିଲେ : 'ପିଇବାକୁ ଯାଉଥିଲି, ତୋ କଥା ମନେପଡ଼ିଲା, ତେଣୁ ଟେଲିଫୋନ୍ କଲି ।'

: 'ତାହେଲେ ସୁର ଭାଇଙ୍କୁ ଡକାଯାଉ ।'  ଖୁସି ହୋଇ ପ୍ରସ୍ତାବ ହେଲେ ଭଣଜା ଗୁରୁ ବାବୁ । ତାହାହିଁ ହେଲା ।

ରାତି ଅଧରେ ରିକ୍ସା ଚଢ଼ି ପହଞ୍ଚିଲେ ଶ୍ୱଶୁରଙ୍କ ଶୟନ, ସପନ ତଥା ପଠନ କକ୍ଷରେ ସୁରେନ୍ଦ୍ର ମହାନ୍ତି । ଟେଲିଫୋନ୍ କରିବାର କାରଣ ଜାଣିବା ପରେ ହଠାତ୍ ରାଗିଗଲେ ସେ । ରାଗର କାରଣ ହେଲା ସେ ସାଧାରଣ କିମ୍ବା ଚାଲୁ ମଦ ପିଅନ୍ତି ନାହିଁ । କେବଳ ସ୍କଚ୍‌ହିଁ ପିଅନ୍ତି ଏବଂ କୌଣସିମତେ ସେ ତାଙ୍କର ମାନଦଣ୍ଡ ତଳକୁ ଆଣିପାରିବେ ନାହିଁ ବୋଲି ଶ୍ୱଶୁରଙ୍କୁ ରୋକ୍‌ଠୋକ୍ ଶୁଣାଇ ଦେଲେ । ଅବଶ୍ୟ ପରବର୍ତ୍ତୀ ସମୟରେ ତାଙ୍କ ଇଛା ଅନୁଯାୟୀ ସ୍କଚ୍ ସେଇ ରାତିରେ କିଣାଯାଇ ତାଙ୍କୁ ଦିଆଯାଇଥିବା କଥା ଗୁରୁ ବାବୁ ଏ ଲେଖକଙ୍କୁ କହିଛନ୍ତି ।

ବାଇଶି ବର୍ଷ ତଳେ (୧୯୭୭) ଏ ଲେଖକ ଗୋଟିଏ ସାହିତ୍ୟ ସଭାକୁ ଆମନ୍ତ୍ରଣ କରିଥିଲା ସୁରେନ୍ଦ୍ର ମହାନ୍ତିଙ୍କୁ । ସଭାସ୍ଥଳରେ ପହଞ୍ଚିବା ପରେ ତାଙ୍କୁ ପାଛୋଟି ନେଉଥିବା ସମୟରେ ସେ ଏ ଲେଖକର ଅନୁଜକୁ ଧୀର ସ୍ୱରରେ କହିଥିଲେ, : 'ଏଠି ଭଲ ଛେନାପୋଡ଼ ମିଳେ ପରା, ବ୍ୟବସ୍ଥା କର ।'

ଅବଶ୍ୟ ତାଙ୍କ କହିବା ପୂର୍ବରୁ ଆମନ୍ତ୍ରିତ ଅତିଥିମାନଙ୍କ ଚର୍ଚ୍ଚା ପାଇଁ ସ୍ଥାନୀୟ ଛେନାପୋଡ଼ର ବ୍ୟବସ୍ଥା କରାଯାଇଥିଲା । କିନ୍ତୁ ତାଙ୍କପରି ବିଶିଷ୍ଟ ଅତିଥିଙ୍କ ପକ୍ଷରୁ ଖାଇବା ଲାଗି କହିବା କଥା ଆୟୋଜକଙ୍କୁ ଆତ୍ମୀୟତାର ପୁଲକ ଦେଇଥିଲା ସେଦିନ । ଏସବୁ କହି ସୁରେନ୍ଦ୍ରଙ୍କ ବ୍ୟକ୍ତିତ୍ୱକୁ କ୍ଷୁଣ୍ଣ କରିବା ଏ ଲେଖାର ଉଦ୍ଦେଶ୍ୟ ନୁହଁ । ବରଂ ଓଡ଼ିଶାର ଜଣେ ବରପୁତ୍ର କିପରି ନିଷ୍କପଟ ଜୀବନ ଜୀଇଁ ସାହିତ୍ୟକୁ ଋଦ୍ଧିମନ୍ତ କରିଯାଇଛନ୍ତି ତାହାହିଁ ଉତ୍ତର ପୁରୁଷଙ୍କ ପାଇଁ ଏକ ଭେଟି ।



# ନିଜସ୍ୱ ଦୁଃଖ

ସମୟ ଥିଲା ଯେତେବେଳେ ଏ ଲେଖକ କେବଳ କବିତାରେ ପରୀକ୍ଷା ନିରୀକ୍ଷାକୁ ସ୍ୱାଗତ କରିନଥିଲା, ଏଥିସହ ନିଜ ମୁହଁର ନିଶ ଓ ଦାଢ଼ିକୁ ଅନେକ ପରୀକ୍ଷା ନିରୀକ୍ଷା ମଧ୍ୟ କରିଥିଲା । କବିତାରେ ଦୁର୍ବୋଧ୍ୟତାକୁ ନିର୍ବାସିତ କରି ସାଙ୍ଗୀତିକତାର ପ୍ରୟୋଗରେ ଯେପରି ଗୁରୁତ୍ୱ ଆରୋପ କରୁଥିଲା, ତା'ଠାରୁ ଅଧିକ ପ୍ରିୟ ଦାଢ଼ି ଓ ନିଶକୁ ବିଭିନ୍ନ ଆକୃତି କରି ରଖିବାର ଅହେତୁକ ସୁଖଟିକୁ ନିଜର ମଧ୍ୟ କରିଥିଲା । ଅବଶ୍ୟ ସେ ସବୁ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱ କାଳର କଥା । ପରେପରେ କବିତାର ସାମ୍ରାଜ୍ୟରୁ ଆତ୍ମ ନିର୍ବାସନ ଦେବା ପରି, ମୁହଁ ଉପରେଅଯଥା ଦୌରାତ୍ମ୍ୟ ଜାହିର କରୁଥିବା ଦାଢ଼ି ଓ ନିଶକୁ ମଧ୍ୟ ମିଳିଥିଲା ମୁକ୍ତି ଚିରକାଳ ଲାଗି ।

କିନ୍ତୁ ସେଥରକ ସେଇ ଅଯତ୍ନ ବର୍ଦ୍ଧିତ ଦାଢ଼ି ପଛରେ ରହିଥିଲା ଗୋଟିଏ ବିଷାଦଭରା ଘଟଣା । ଜୀବନ ପ୍ରତି ବୀତସ୍ପୃହ ହେବା ଛଡ଼ା ଅନ୍ୟ କିଛି ପନ୍ଥା ଯେପରି ନଥିଲା ମୋ ପାଖରେ । ତା' ହେଉଚି, ମୋର ଜଣେ ଅନୁଜର ତରୁଣ ବୟସରେ ଅପମୃତ୍ୟୁ । ଦୁରାରୋଗ୍ୟ ରକ୍ତ କର୍କଟ ବ୍ୟାଧିରେ ପୀଡ଼ିତ ପନ୍ଦର ବର୍ଷର କିଶୋରଟିଏ ଥିଲେ ସେ । ଏତେ କମ୍ ବୟସରେ ଏପରି ରୋଗ ଧରିବା ସେତେବେଳେ ପ୍ରାୟତଃ ନୂଆକଥା ଥିଲା । ମୃତ୍ୟୁକୁ ଅପେକ୍ଷା କରିଥିବା ଏଇ ତରୁଣଙ୍କ (ମୋ ସଂପର୍କୀୟ) ସହ ଶେଷ ଜୀବନର କେତୋଟି ଦିନ କଟିଥିଲା ଏ ଲେଖକ ସହ । ତେବେ ସବାଶେଷ ଦିନର ସ୍ମୃତି ଗଭୀର ଭାବେ ଏବେବି ପୀଡ଼ା ଦିଏ । ସେତେବେଳେ ତାଙ୍କର ଆରୋଗ୍ୟ କାମନା ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରବା ଛଡ଼ା ଅନ୍ୟ ସବୁ ଯେମିତି ବନ୍ଦ ଥିଲା ପରି ମନେ ହେଉଥିଲା । ଶେଷରେ ଈଶ୍ୱର ହିଁ ତାଙ୍କ ଦରଓ୍ୱାଜ ଆଉ ଫିଟେଇଲେ ନାହିଁ । ସେଇ ଅନୁଜଙ୍କ ମୃତ୍ୟୁର ବିଷାଦରେ ଜୀବନ ପ୍ରତି ଯେଉଁ ବୈରାଗ୍ୟ ଆସିଥିଲା-ତା'ର ପ୍ରଥମ ସଙ୍କେତ ହିଁ ଥିଲା ମୁହଁ ଉପରେ ବଢ଼ିଥିବା ଦାଢ଼ି, ଯଦିଓ ଦାଢ଼ି ରଖିବାକୁ ସେ ସମୟରେ ଏକ ସଉକ୍ ଭାବେ ଗଣନା କରାଯାଉଥିଲା ତେବେ ଏହା ସେ ପର୍ଯ୍ୟାୟର ହିଁ ନଥିଲା ଆଦୌ ।

: ଦାଢ଼ି କାହିଁକି ରଖିଛ ? ଅତର୍କିତ ଭାବେ ସେଦିନ ପ୍ରଶ୍ନ କଲେ ପ୍ରଖ୍ୟାତ୍ ଔପନ୍ୟାସିକ ଗୋପୀନାଥ ମହାନ୍ତି ।

ଏପରି ଏକ ପ୍ରଶ୍ନର ସାମ୍ନା କରିବାକୁ ମୁଁ ଯେପରି ପ୍ରସ୍ତୁତ ନଥିଲି । ଅଗତ୍ୟା ତାଙ୍କ ମୁହଁକୁ ବଲ୍ ବଲ୍ ଚାହିଁଲି । ସେ କିନ୍ତୁ ଛାଡ଼ିବା ଲୋକ ନଥିଲେ । ପୁଣି ଥରେ ସେ ସେଇ ପ୍ରଶ୍ନ କଲେ । ବାଧ୍ୟ ହୋଇ ମୁଁ ତାଙ୍କୁ ମୋର ଅନୁଜର ଅକାଳ ମୃତ୍ୟୁ କଥା ସବିଶେଷ କହିଲି । ଧ୍ୟାନ

ସହକାରେ ସେ ମୋ’ କଥା ଶୁଣିଲେ । ଦୁଃଖ କଲେ । ମୃତ୍ୟୁ ସମ୍ପର୍କରେ ସବିଶେଷ ଆଲୋଚନା ଆରମ୍ଭ କରିଦେଲେ ସେ । କାଳ ସବୁ କିଛି ହଜମ କରିଦିଏ- ଏ କଥା ଜାଣିବା ପରେବି ମଣିଷ କେମିତି ସେ କଥାକୁ ପ୍ରତିନିୟତ ଭୁଲି ଯାଇ ଯାବତୀୟ ଅପକର୍ମରେ ଲିପ୍ତ ରହିଥାଏ ତା’ର ସୁନ୍ଦର ବର୍ଣ୍ଣନାଟିଏ କଲେ ସେ । ଜଣେ ନିଶାଗ୍ରସ୍ତ ଲୋକ ପରି ସେ ସବୁ ଯେମିତି ମୁଁ ଆକଣ୍ଠ ପାନ କରୁଥାଏ । ହଠାତ୍ ନାଟକୀୟ ଭଙ୍ଗୀରେ ନିଜ ଚଉକି ପଛ ପଟେ ଥିବା ଗୋଟିଏ ବ୍ଲାକ୍‌ବୋର୍ଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି ସେ କହିବାକୁ ଲାଗିଲେ :

: ତମେ ଏ ଯେଉଁ କଳାପଟାକୁ ଦେଖୁଚ, ଏଇଟା ହେଉଚି ମହାକାଳ । କଳାପଟାର କୋଣ ପାଖରେ ଯାଇ ପହଞ୍ଚିଲାଣି, ହିଟଲର, ନେପୋଲିଅନ୍ ! କେଡ଼େକେଡ଼େ ବୀର ଥିଲେ, କିନ୍ତୁ କାଳ ସେମାନଙ୍କୁ ନେଇ କୋଉଠି ରଖି ସାରିଲାଣି ବିନ୍ଦୁଟିଏ କରି । ହୁଏତ କେତେ ସହସ୍ର ବର୍ଷ ପରେ ମଣିଷ ଜାତି ସେମାନଙ୍କ ନାମ ମଧ୍ୟ ବିସ୍ମରଣ ହେବ । ଜୀବଦ୍ଦଶାରେ କେତେ ପ୍ରତାପଶାଳୀ ନଥିଲେ ସେମାନେ ।

: ଦୁଃଖ କାହିଁକି ଆସୁଛି, ଜାଣିଚ କି ? ମଣିଷ ନିଜେ ନିଜର ସୀମା ଅତିକ୍ରମ କରିଯିବାକୁ ସବୁବେଳେ ବ୍ୟାକୁଳ, ସେଇ ବ୍ୟାକୁଳତା ହିଁ ସବୁ ବିପର୍ଯ୍ୟୟର ଅସଲ ମଞ୍ଜି । ତୁମେ ହୁଏତ ଭାବୁଥିବ ଗୋପୀନାଥ ମହାନ୍ତି ଯିଏ ଜ୍ଞାନପୀଠ ପୁରସ୍କାର ପାଇଥିବା ଗୋଟାଏ ବଡ଼ ଲେଖକ । ମାତ୍ର ମହାକାଳ କ’ଣ ବୁଝେ ସେ ସବୁ ? ଦିନେ ନା ଦିନେ ସେ ନିଶ୍ଚିହ୍ନ କରିଦବ । କାହାରିବି ମନେ ପଡ଼ିବନି ଯେ ଦିନେ ଏଇ ପୃଥିବୀକୁ ଗୋପୀ ମହାନ୍ତି ବୋଲି ଲୋକଟିଏ ଆସିଥିଲା । ତାହାହିଁ ସତ୍ୟ । ହେଲେ ଏକଥା ମାନୁଚି କିଏ ?’’ ସେ ମୋ ଆଡ଼କୁ ଚାହିଁ ରହିଲେ ଅପଲକ ନୟନରେ, ମୁଁ ଟିକିଏ ଅପ୍ରସ୍ତୁତ ଅନୁଭବ କରୁଥାଏ ଓ କାହିଁକି ଏ ଦାଢ଼ି ରଖିଲି’ ବୋଲି ନିଜକୁ ଅଭିସଂପାତ ଦେଉଥାଏ । ସେ ପୁଣି କହିଲେ,

: ମୁଁ ତୁମକୁ ଗୋଟେ ମନ୍ତ୍ର ଦେବି ।

: କି ମନ୍ତ୍ର ?’ ମୁଁ ପଚାରିଲି ।

: ‘ମୁଁ - ହୀନ’ ମନ୍ତ୍ର ।

: ‘ସେଇଟା କ’ଣ ?’ ନ ବୁଝି ପାରି ମୁଁ ପୁଣି ପଚାରିଲି ।

: ପ୍ରତି ଦିନ ସକାଳ ଅଥବା ସଂଧ୍ୟାରେ (ନିଜ ସୁବିଧା ଅନୁଯାୟୀ) କୌଣସି ନିର୍ଜନ ସ୍ଥାନରେ ଧ୍ୟାନ କରିବ ।

ମୁଦ୍ରିତ ଚକ୍ଷୁ ହିଁ ଏଥିପାଇଁ ସହାୟକ ହୋଇଥାଏ । ତେବେ ଧ୍ୟାନ ବେଳେ ତୁମେ ଗୋଟାଏ କଥା ହିଁ ଚିନ୍ତା କରିବ ଈଶ୍ୱରଙ୍କ ଉଦ୍ଦେଶ୍ୟରେ । ତା’ ହେଉଚି - ‘ମୁଁ କିଛି ନୁହେଁ, ସବୁଠୁ ତୁଚ୍ଛ । ତୁମରି କରୁଣାରୁ ମୁଁ ଯାହା କିଛି ହୋଇଛି । ମୋର ଆସ୍ଫାଳନ ହିଁ ମୋ ଅଜ୍ଞତା ଯୋଗୁଁ, ମତେ

କ୍ଷମା କର' । ଏଇପରି ପ୍ରତିଦିନ ଧ୍ୟାନ ମଗ୍ନ ରହି ଚିନ୍ତା କର । ଦେଖିବ-ତମେ ତମକୁ ଭଲ ରୂପେ କିପରି ବୁଝି ପାରୁଛ ।' ସେ କହି ଚାଲିଥା'ନ୍ତି ।

: ଏପରି କାହିଁକି ? ଜଣେ ନିର୍ବୋଧ ପରି ମୁଁ ପଚାରିଲି ।

: ଯେତେ ସବୁ ଦୁଃଖ, ହିଂସା, କାତରତା, ଯୁଦ୍ଧ, ପରାଜୟର ଗ୍ଲାନି-ସବୁରି ପଛରେ ସେଇ ଗୋଟିଏ କାରଣ - ମୁଁ, ହିଁ ରହିଛି । ସେ ନିର୍ବିକାର ଭାବେ କହିଲେ ।

ସେଦିନ ତାଙ୍କ ପାଖରୁ ଫେରିବା ବେଳେ ମଣିଷ କିପରି ନିଜ 'ମୁଁ'ର ଶିକାର ହୋଇ ସବୁବେଳେ ଦୁଃଖ ତଥା ବିପତ୍ତିକୁ ଆମନ୍ତ୍ରଣ କରିଛି, ସେଇ ସଂପର୍କୀୟ ଗଳ୍ପଟି ମନେ ପକାଉଥିଲି ।

ଗଳ୍ପଟି ଏଇପରି : ଥରେ ଗୋଟିଏ କଇଁଚ ସମୁଦ୍ରରେ ପହଁରୁଥିବା ସମୟରେ ତା'ର ଉଡ଼ିବାକୁ ପ୍ରବଳ ଇଚ୍ଛା ହେଲା, ବେଳେବେଳେ ତା'ର ଧାରଣା ହେଉଥିଲା, ସମୁଦ୍ର ଭିତରେ ସେ ଯଦି ଏତେ ଦ୍ରୁତ ଭାବେ ପହଁରି ପାରୁଛି, ତେବେ ଆକାଶରେ କାହିଁକି ଉଡ଼ି ପାରିବନି ? ଠିକ୍ ଏଇ କଥାଟି ଚିନ୍ତା କରୁଥିବା ସମୟରେ ଆକାଶରେ ଗୋଟିଏ ଚିଲ ଉଡୁଥିବାର ସେ ଦେଖିଲା । ଉଡୁଉଡୁ ଯେତେବେଳେ ଚିଲଟି କଇଁଚର ପ୍ରାୟତଃ ନିକଟବର୍ତ୍ତୀ ହେଲା, କଇଁଚ କେବଳ ତା' ସହ ବନ୍ଧୁତା ସ୍ଥାପନ ପାଇଁ ପ୍ରୟାସ କରିନଥିଲା, ଏଥିସହ ସେ ତା'ର ଅଭିପ୍ରାୟ ମଧ୍ୟ ଚିଲକୁ କହି ବସିଲା ।

: ତମ ଭିତରେ ଗୋଟେ ସ୍ୱପ୍ନ ଅଛି ଜାଣି ମୁଁ ଅତ୍ୟନ୍ତ ପୁଲକିତ, ସ୍ୱପ୍ନ ନଥିଲେ କି ଜୀବନ !' ଚିଲଟି କଇଁଚକୁ ସୁହାଇଲା ଭଳି କହିଲା ।

: ତମେ ମତେ ଉଡ଼ିବାରେ ସାହାଯ୍ୟ କରିବ ? ଏହାଥିଲା କଇଁଚର ସ୍ୱାଭାବିକ୍ ପ୍ରଶ୍ନ ।

: ମାତ୍ର କିପରି ?' ପଚାରିଲା ଚିଲ ।

ଏଇପରି କଥୋପକଥନ ପରେ ସ୍ଥିର ହେଲା, ଚିଲ କଇଁଚକୁ ଆକାଶ ଉପରକୁ ଉଠାଇ ନେବ । ତାହାହିଁ ହେଲା । ପରବର୍ତ୍ତୀ ଘଟଣାଟି ସହଜରେ ଅନୁମେୟ । ନିଜ ହାତରେ ଜାବୁଡ଼ି ଧରି ଚିଲ କଇଁଚକୁ ନେଇ ଉଡୁଥିବା ସମୟରେ ଠାଏ ତା'ର ହାତ କୋହଳ ହେଇଗଲା ଆପଣା ଛାଏଁ । ଚିଲ ହାତରୁ ଖସି ଆକାଶ ମାର୍ଗରେ ଉଡ଼ିବାକୁ ବୃଥା ପ୍ରୟାସ କରୁଥିବା କଇଁଚଟି ବିଚରା ଗୋଟିଏ ପଥର ଉପରେ ପଡ଼ି ଖଣ୍ଡ ବିଖଣ୍ଡ ହେଇଗଲା । ନିଜଠାରୁ ନିଜକୁ ଦୂରରେ ରଖି ବିପର୍ଯ୍ୟୟକୁ ଆମନ୍ତ୍ରଣ କରିବା ଭଳି ଦୁଃଖ ଆଉ କ'ଣ ଅଛି ?



# ନେତା ଓ ଅଭିନେତା

**ସ୍ୱା**ଧୀନତା ପରେ ତ ଓଡ଼ିଶା ଅନେକ ମୁଖ୍ୟମନ୍ତ୍ରୀ ଦେଖିସାରିଛି । କିନ୍ତୁ ଜନସାଧାରଣଙ୍କ ଅବସ୍ଥାରେ କ'ଣ ପରିବର୍ତ୍ତନ ଅଥବା ଉନ୍ନତି ହୋଇଛି କି ? ଏବେ ମୁଖ୍ୟମନ୍ତ୍ରୀ ହେବା ବଡ଼କଥା ନୁହେଁ, ବରଂ ଓଡ଼ିଶାକୁ ଉଚିତ୍ ମାର୍ଗରେ ନେଇଯିବା ଲାଗି ଯେଉଁ ଯୋଗ୍ୟ ଲୋକ ଦରକାର ଏବଂ ଉତ୍ତମ ଶାସନ ପାଇଁ ଆବଶ୍ୟକ ହେଉଥିବା ନେତାଙ୍କୁ ବିଧାନସଭାକୁ ଆଣିବା ହିଁ ବଡ଼କଥା । ଜଣେ ମୁଖ୍ୟମନ୍ତ୍ରୀ କେବଳ ସଚ୍ଚୋଟ ଅଥବା ନିଷ୍ଠାପର ହେଲେ ହିଁ ଏ ଜାତିର ପୁରା ଉନ୍ନତି ସମ୍ଭବ ହେବନି ।

ପୃଥିବୀ ହେଉଛି ରଙ୍ଗମଞ୍ଚ ଏବଂ ସମସ୍ତ ପୁରୁଷ ଓ ନାରୀ ହେଉଛନ୍ତି କେବଳ ଅଭିନେତା ଓ ଅଭିନେତ୍ରୀ । ନାଟ୍ୟକାର ସେକ୍ସପିଅରଙ୍କ 'ଆଜ୍ ୟୁ ଲାଇକ୍ ଇଟ୍' ନାଟକର ଏହି ଆପ୍ତବାକ୍ୟଟି ସର୍ବଜନ ବିଦିତ । ମାତ୍ର ଭାରତୀୟ ରାଜନୀତିଜ୍ଞମାନେ ଏଇ ବାକ୍ୟଟିର କେବଳ ମର୍ମ ବୁଝିନାହାଁନ୍ତି ବରଂ ଏହାକୁ ସତ୍ୟରେ ପରିଣତ କରିବା ଲାଗି ସମସ୍ତ ଜ୍ଞାନ ଓ କୌଶଳକୁ ଖଟାଇବାରେ ଆଦୌ ପଶ୍ଚାଦ୍‌ପଦ ହୋଇନାହାଁନ୍ତି । ପ୍ରତିଟି ନେତା ଏଠି ଜଣେଜଣେ କୁଶଳୀ ଅଭିନେତା ପ୍ରଥମେ । ସମୟକ୍ରମେ ସେମାନେ ସ୍ନେହ, ପ୍ରେମ, ଦୟା କରୁଣା, ପ୍ରତାରଣା ଓ ଶତ୍ରୁତା ପ୍ରଦର୍ଶନ କରିବାରେ ଯେଉଁ ନିପୁଣତା ପ୍ରଦର୍ଶନ କରିଥାନ୍ତି, ଜଣେ କୁଶଳୀ ଅଭିନେତା ମଧ୍ୟ ସେପରି କରିବା ସମ୍ଭବ ହୋଇନଥାଏ । ଜଣେ ଅଭିନେତା ତା'ର ଅଭିନୟ କଳା ନୈପୁଣ୍ୟ ଦେଖାଇବାରେ ନିଜର ସଚ୍ଚୋଟତା ଦେଖାଉଥିବା ସମୟରେ ଜଣେ ନେତା ତା'ର ଆଚାର, ବ୍ୟବହାର, ଆଚରଣ ଏବଂ ଉଚ୍ଚାରଣରେ ସାଧୁତା ପ୍ରଦର୍ଶନ କରିନଥାଏ । ଯେଉଁମାନେ ଏଇ ସାଧୁତାକୁ ଅବଲମ୍ୱନ ଭାବେ ଗ୍ରହଣ କରନ୍ତି ସେମାନଙ୍କୁ ପରିହାସ ଛଳରେ ପ୍ରାୟ ଶହେଚାଳିଶ ବର୍ଷ ତଳେ ପେନ୍‌ସିଲ୍‌ଭାନିଆ ସାଧାରଣତନ୍ତ୍ର ମୁଖ୍ୟ ସାଇମନ୍ କାମେରନ୍ ଯେଉଁ ମନ୍ତବ୍ୟ ଦେଇଥିଲେ ତାହା ଆଜି ବି ଭାରତୀୟ ରାଜନୀତିଜ୍ଞ ପ୍ରତି ପ୍ରାସଙ୍ଗିକତାର ଅପେକ୍ଷା ରଖେ ଏବଂ ତାଙ୍କ ଭାଷାରେ 'ଖରିଦ୍ କରିବା ପରେ ଯିଏ ଅନୁଗତ ରହିବ, ସେହିଁ ସଚ୍ଚୋଟ ରାଜନୀତିଜ୍ଞ ଅଟେ ।' (An honest Politician is one who, when he is bought, will stay bought)

ନେତାଙ୍କ ସମ୍ପର୍କରେ ଅନେକ କଥା କୁହାଯାଇପରିବ । ମାତ୍ର ଆଜି ଜଣେ ଅଭିନେତାଙ୍କ ସମ୍ପର୍କରେ କହିବା ସୁଯୋଗ ଆସିଛି, ଯିଏ ପ୍ରଥମେ ଜଣେ ଅଭିନେତା ଭାବେ ବେଶ୍ ଜଣାଶୁଣା ଏବଂ ପ୍ରତିଷ୍ଠା ଅର୍ଜନ କରିଛନ୍ତି ଏବଂ ପ୍ରାୟ ସାଢ଼େ ଚାରିବର୍ଷ ତଳେ ରାଜନୀତିରେ ପଶାକାଠି

ଗଡ଼େଇବା ଆରମ୍ଭ କରିଛନ୍ତି । ଅଳ୍ପଦିନ ତଳେ ଏ ଲେଖକ ତାଙ୍କୁ ଭେଟିବାର ସୁଯୋଗ ପାଇବା ବେଳକୁ ଓଡ଼ିଶାର ରାଜନୀତି ଜଳବାୟୁ ବେଶ୍ ସରଗରମ ହେବା ଆରମ୍ଭ କରିଥିଲା, କାରଣ ମାତ୍ର ଅଳ୍ପ ଦିନ ତଳେ ରାଜ୍ୟରେ ବିଧାନସଭା ନିର୍ବାଚନ କରାଯିବାର ଘୋଷଣା ଭାରତର ନିର୍ବାଚନ କମିଶନରଙ୍କ ତରଫରୁ କରାଯାଇ ସାରିଥିଲା । ରାଜଧାନୀରେ ବିଭିନ୍ନ ଅଞ୍ଚଳର ଆଶୟୀ ପ୍ରାର୍ଥୀମାନେ ବିଧାନସଭା ନିର୍ବାଚନ ପାଇଁ ଟିକେଟ୍ ପାଇବା ଲାଗି ଲବି ଆରମ୍ଭ କରିସାରିଥିଲେ ।

: ଆପଣ ତ ଜଣେ ସଫଳ ଆଉ ଲୋକପ୍ରିୟ ଅଭିନେତା ଭାବେ ରାଜ୍ୟରେ ପରିଚିତ । ମାତ୍ର ହଠାତ୍ ରାଜନୀତିରେ ପଶିଲେ କାହିଁକି ?'

ସାକ୍ଷାତ୍‌ର ଅଳ୍ପ କେଇଟି ମିନିଟ୍ ପରେ ଏହା ଥିଲା ମୋର ପ୍ରଶ୍ନ । ଉତ୍ତର ଦେବାକୁ ଯାଇ ପ୍ରଶାନ୍ତ ନନ୍ଦ ତାଙ୍କର ମୁହଁ ଖୋଲିଲେ :

ଏଯାବତ୍ ଅନେକ ଫିଲ୍ମରେ କାମ କଲି ନାଁ କମେଇଲି, ପଇସା ବି-ହେଲେ ସମାଜରେ କିଛି ପରିବର୍ତ୍ତନ ଆଣିବାର ଇଚ୍ଛା ଫଳବତୀ ହୋଇପାରିଲାନି ଏଥିରେ, ତେଣୁ ରାଜନୀତିକୁ ଆସିଲି । କାରଣ କ୍ଷମତା ହିଁ ଯାହାକିଛି ପରିବର୍ତ୍ତନ ଆଣିବାର ଇଚ୍ଛାକୁ ସାକାର କରିପାରିବ । ସ୍ୱଭାବ ସୁଲଭ ହସ ଫୁଟାଇ ସେ କହିଲେ । ଆଉ ଠିକ୍ ଏତିକିବେଳେ ଏ ଲେଖକ କିଛି କହିବା ଆଗରୁ ପାଖରେ ଥିବା ଟେଲିଫୋନ୍ ବାଜି ଉଠିଲା । ଆରପଟେ ଜଣେ ଯୁବ ସାମ୍ବାଦିକ ଥିଲେ । କଥାବାର୍ତ୍ତାରୁ ଠଉରାଇ ନେଲି । ସାମ୍ବାଦିକ ତାଙ୍କୁ ବାରମ୍ବାର ଗୋଟିଏ ପ୍ରଶ୍ନ କରୁଥିଲେ ଏଥର ତାଙ୍କ ଦଳ କ୍ଷମତାକୁ ଆସିଲେ କିଏ ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କରିବ ? ମାତ୍ର ଜଣେ ଅଭିଜ୍ଞ ଖେଳୁଆଡ଼ ପରି ସେ ତାଙ୍କ ପ୍ରଶ୍ନକୁ ହସି ଉଡ଼େଇ ଦେଉଥାନ୍ତି ଯେପରି । ଠିକ୍ ସେଇମିତି ଜଣାପଡୁଥାଏ ।

: 'ମୁଖ୍ୟମନ୍ତ୍ରୀ ହେବା ନେଇ ଆପଣ ଏତେ ବ୍ୟସ୍ତ କାହିଁକି ?' ସେ ଓଲଟା ପ୍ରଶ୍ନ କରୁଥାନ୍ତି ସାମ୍ବାଦିକଙ୍କୁ । ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥାନ୍ତି : ସ୍ୱାଧୀନତା ପରେ ତ ଓଡ଼ିଶା ଅନେକ ମୁଖ୍ୟମନ୍ତ୍ରୀ ଦେଖିସାରିଛି । କିନ୍ତୁ ଜନସାଧାରଣଙ୍କ ଅବସ୍ଥାରେ କ'ଣ ପରିବର୍ତ୍ତନ ଅଥବା ଉନ୍ନତି ହୋଇଛି କି ? ଏବେ ମୁଖ୍ୟମନ୍ତ୍ରୀ ହେବା ବଡ଼କଥା ନୁହେଁ, ବରଂ ଓଡ଼ିଶାକୁ ଉଚିତ୍ ମାର୍ଗରେ ନେଇଯିବା ଲାଗି ଯେଉଁ ଯୋଗ୍ୟ ଲୋକ ଦରକାର ଏବଂ ଉତ୍ତମ ଶାସନ ପାଇଁ ଆବଶ୍ୟକ ହେଉଥିବା ନେତାଙ୍କୁ ବିଧାନସଭାକୁ ଆଣିବା ହିଁ ବଡ଼କଥା । ଜଣେ ମୁଖ୍ୟମନ୍ତ୍ରୀ କେବଳ ସଚ୍ଚୋଟ ଅଥବା ନିଷ୍ଠାପର ହେଲେ ହିଁ ଏ ଜାତିର ପୁରା ଉନ୍ନତି ସମ୍ଭବ ହେବନି । ସାମ୍ବାଦିକଙ୍କୁ ସେ ବୁଝାଇବା ବେଳେ ଭାବ ପ୍ରବଣ ହୋଇଯାଉଥିବାର ଏ ଲେଖକ ଲକ୍ଷ୍ୟ କରୁଥିଲା । ମାତ୍ର ସେ ହତୋତ୍ସାହ ହେଉନଥିଲେ ।

ସାମାଜିକ ପ୍ରତିବଦ୍ଧତା ପ୍ରତି ଅଙ୍ଗିକାରବଦ୍ଧ ହିଁ ପ୍ରତିଟି ଶିଳ୍ପୀର ଆଭିମୁଖ୍ୟ ହେବା ଦରକାର । ଖାସ୍ ସେଇଥିପାଇଁ ନିକଟରେ 'ନର୍ମଦା ବଞ୍ଚାଅ ଆନ୍ଦୋଳନ'ର ସ୍ରୋତରେ ନିଜକୁ ହଜାଇ ଦେଇଛନ୍ତି ସୁପ୍ରସିଦ୍ଧ ତଥା ବୁକର୍ ପୁରସ୍କାର ବିଜେତା ଔପନ୍ୟାସିକା ଅରୁନ୍ଧତୀ ରାୟ । ନର୍ମଦା ବଞ୍ଚାଅ ଆନ୍ଦୋଳନକୁ କେନ୍ଦ୍ରକରି ସେ ଏବେ ଏକ କ୍ଷୁଦ୍ର ବହି ଲେଖିଛନ୍ତି ଯାହାର ଶୀର୍ଷକ ହେଉଛି 'ବହୁଜନ ହିତାୟ' (ମ୍ୟାଟର୍ ଅଫ୍ କମନ୍ ଗୁଡ୍) ଯାହା ବେଶ୍ ଲୋକପ୍ରିୟ ହୋଇଛି ଏବେ ।

: ଆପଣ ତାହେଲେ ଚଳଚ୍ଚିତ୍ର ଜଗତରୁ ବିଦାୟ ନେଇଗଲେ ?'' ଏ ଲେଖକର ପ୍ରଶ୍ନ ଥିଲା ।

: ସେଇଟା କେମିତି ହେବ ? ସେଇଟା ତ ମୋ ଚେର । ଏସବୁ ଶାଖା, ପ୍ରଶାଖା ତା'ରି ଯୋଗୁଁ ସମ୍ଭବ ହୋଇଛି । ନିଜର ମୋହରୁ କ'ଣ ମଣିଷର ମୁକ୍ତି ଅଛି ?'' ସେ କହିଲେ

ସେଦିନ ଅଭିନେତା ଓ ନେତା ପ୍ରଶାନ୍ତ ନନ୍ଦଙ୍କ ଘରୁ ବିଦାୟ ନେଇ ଫେରିବା ରାସ୍ତାରେ ସେଇ ଧର୍ମଯାଜକଙ୍କ କଥା ମନେପଡୁଥିଲା । ଥରେ ଜଣେ ଧର୍ମଯାଜକ ଗୋଟିଏ ସହରର ଅଧିବାସୀଙ୍କୁ ଧର୍ମ ଶିକ୍ଷା ଦେବା ପାଇଁ ପହଞ୍ଚିଥିଲେ । ପ୍ରଥମେ ସହରବାସୀମାନେ ତାଙ୍କ ଭାଷଣ ଖୁବ୍ ଆଗ୍ରହର ସହ ଶୁଣୁଥିଲେ । ଧୀରେ ଧୀରେ ଶ୍ରୋତାଙ୍କ ସଂଖ୍ୟା କମିବା ଆରମ୍ଭ କଲା, ସମୟ ଆସିଲା ଯେତେବେଳେ ଗୋଟିଏ ବି ଶ୍ରୋତା ରହିଲେ ନାହିଁ ଶୁଣିବାକୁ ତାଙ୍କ ଭାଷଣ । ତଥାପି ଧର୍ମଯାଜକଙ୍କର ଭାଷଣ ଦେବାରେ ବିରତି ନଥାଏ । ଆଶ୍ଚର୍ଯ୍ୟ ହୋଇ ବାଟୋଇଟିଏ ଧର୍ମଯାଜକଙ୍କୁ ପ୍ରଶ୍ନ କଲା : ଏବେ କହିଁକି ଆପଣ ଏ ଭାଷଣ ସବୁ ଶୁଣାଉଛନ୍ତି ?'' ଧର୍ମଯାଜକ ନିର୍ବିକାର ଚିତ୍ତରେ କହିବାକୁ ଲାଗିଲେ : ପ୍ରଥମେ ଏସବୁ ସହରବାସୀଙ୍କ ହୃଦୟ ପରିବର୍ତ୍ତନ କରିବି ବୋଲି ଭାବିଥିଲି, ଏବେ ମୁଁ ଏଇଥି ପାଇଁ ଏପରି ଭାଷଣ ଦେଉଛି ଯଦ୍ୱାରା ସେମାନେ ମୋ ନିଜ ହୃଦୟ ପରିବର୍ତ୍ତନ କରିବାରୁ କ୍ଷାନ୍ତ ରହିବେ ।'' ସାମାଜିକ ପରିବର୍ତ୍ତନ ଆଣିବା ଲାଗି ସଂକଳ୍ପ ନେଇଥିବା ଅଭିନେତା ଓ ନେତା ଶ୍ରୀ ନନ୍ଦଙ୍କୁ ବୁଝାଇବା ଆଦୌ ଦରକାର ପଡ଼ିବନି ଯେ ସେ ଯେଉଁ ମୂଲ୍ୟବୋଧରେ ବିଶ୍ୱାସ ରଖିଛନ୍ତି, ସେଇ ମୂଲ୍ୟବୋଧର ମୂର୍ଚ୍ଛନାଟିକୁ ଜନସାଧାରଣଙ୍କୁ ବାରମ୍ବାର ଶୁଣାଇବାକୁ ପଡ଼ିବ । ତାହାହିଁ ହେବ ସଫଳତାର ଚାବିକାଠି, ଏକଥା ସେ ଭଲଭାବେ ମନେ ରଖିବା ଦରକାର ।



# ତସ୍କର ଅବତାର

ପ୍ରାୟ ଦୁଇ ଦଶନ୍ଧି ହେବ ବୃତ୍ତିଗତ ଅପରିହାର୍ଯ୍ୟତା ଯୋଗୁଁ ଶିଳ୍ପାନୁଷ୍ଠାନର ଶ୍ରମିକମାନଙ୍କ ସମସ୍ୟା ସହ ଏ ଲେଖକ ଅବହିତ । ସେମାନଙ୍କ ଦୁଃଖ, ଆନନ୍ଦ ଓ ନାନାବିଧ ସ୍ୱପ୍ନ ତଥା ସଂଘର୍ଷଜନିତ ଗ୍ଲାନି ସହ ପରିଚିତ ହେବାର ସୁଯୋଗ ମିଳିଛି ଏଇ ବର୍ଷମାନଙ୍କରେ ।

ଏଇ ବର୍ଷମାନଙ୍କ ଭିତରେ ସେମାନେ ପାଳନ କରୁଥିବା ମଇ ଦିବସଟିକୁ ମଧ୍ୟ ଲକ୍ଷ୍ୟ କରି ଆସିଛି ଏ ଲେଖକ । ପ୍ରତିବର୍ଷ ପରି ଏ ବର୍ଷର ମଇ ଦିବସର ଅନୁଭୂତି ଥିଲା ଟିକେ ନିଆରା । କୌଣସି ଏକ ଶ୍ରମିକ ସଙ୍ଗଠନର ଉଦ୍ୟୋକ୍ତାମାନେ ଆମନ୍ତ୍ରିତ କରିଥିଲେ ପ୍ରାକ୍ତନ ବରିଷ୍ଠ ଶ୍ରମିକ ନେତାଙ୍କୁ । ସଂଧ୍ୟାରେ ସାଧାରଣ ସଭାର ଆୟୋଜନ କରାଯାଇଥିଲା ।

ଶ୍ରମିକ ଦିବସର ସକାଳ କାର୍ଯ୍ୟକ୍ରମଟି ପ୍ରାୟତଃ ପ୍ରତିବର୍ଷ ଏକାପ୍ରକାର ବିଧିରେ ଚାଲିଥାଏ । ସେଗୁଡ଼ିକ ଭିତରେ ଥାଏ ଶ୍ରମିକମାନଙ୍କ ଶୋଭାଯାତ୍ରା, ସହର ଅଥବା ଶିଳ୍ପାଞ୍ଚଳ ପରିକ୍ରମା, ଶ୍ରମିକ ଏକତା ଦୀର୍ଘଜୀବୀ ହେଉ ବୋଲି ଯାବତୀୟ ସ୍ଲୋଗାନ୍ ଏବଂ କାରଖାନା କର୍ତ୍ତୃପକ୍ଷଙ୍କ କାର୍ଯ୍ୟକଳାପର ସମାଲୋଚନାପୂର୍ବକ ଦୀର୍ଘ ବକ୍ତୃତା ପ୍ରଦାନ । ଏହି କାର୍ଯ୍ୟକ୍ରମର ପୁନରାବୃତ୍ତି ଚାଲିଛି ଭାରତରେ ୧୯୨୩ ମସିହାରୁ ଆଜିଯାଏ । ଯଦିଓ ଶ୍ରମିକ ଦିବସ ପାଳନ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କରେ ୧୮୯୦ ମସିହାରୁ ଆରମ୍ଭ ହୋଇଛି ।

ଏ ବର୍ଷ ମଇ ଦିବସରେ ଭାଷଣରେ କିନ୍ତୁ ଶ୍ରମିକ ଦିବସର ଅୟମାରମ୍ଭର କାହାଣୀ ଶୁଣିବାକୁ ମିଳିଲାନି ଏ ଲେଖକକୁ । ଚିକାଗୋସହରରେ କିପରି ଦୈନିକ ଆଠଘଣ୍ଟା କାମ କରିବାର ଦାବିକୁ ନେଇ ଯେଉଁ ଆନ୍ଦୋଳନ ହୋଇଥିଲା ଏବଂ ସେଥିରେ ମୃତ୍ୟୁବରଣ କରିଥିବା ଶ୍ରମିକମାନଙ୍କ କଥା ଏ ବର୍ଷର ଭାଷଣରେ ସ୍ଥାନ ପାଇନଥିଲା ବକ୍ତାମାନଙ୍କର । ପ୍ରାକ୍ତନ ଶ୍ରମିକ ନେତା ଭାଷଣ ଦେବାକୁ ଯାଇ ସମବେତ ଶ୍ରୋତାଙ୍କୁ ଉତ୍ତେଜିତ କରିଥିଲେ କାରଖାନା କର୍ତ୍ତୃପକ୍ଷଙ୍କ ବିରୁଦ୍ଧରେ ପ୍ରତିକୂଳ ମନ୍ତବ୍ୟମାନ ଦେଇ । ଏପରିକି ଭାଷଣ ପ୍ରସଙ୍ଗରେ ସେ କର୍ତ୍ତୃପକ୍ଷଙ୍କୁ ତସ୍କର ବୋଲି ଅଭିହିତ କରିବାକୁ ପଛାଇଲେ ନାହିଁ । ଶ୍ରୁତିରୋଚକ ଭାଷଣ ମଝିରେ ସମବେତ ଶ୍ରମିକମାନଙ୍କ ଘନଘନ କରତାଳି ବକ୍ତାଙ୍କୁ ଆହୁରି ଉତ୍ସାହିତ କରୁଥିଲା ଯେମିତି । ଗୋଟାଏ ଆହତ ବାଘୁଣୀ ପରି ସେ ତାଙ୍କର ଆକ୍ରମଣ ଜାରି ରଖିଥିଲେ । ବିଶିଷ୍ଟ ଦାର୍ଶନିକ କାର୍ଲ ମାର୍କସ୍ଙ୍କ ବକ୍ତବ୍ୟକୁ ଉଦାହରଣ ଦେଇ ସେ କହୁଥିଲେ : କେବଳ ଶିକୁଳିକୁ ଛାଡ଼ିଦେଲେ ସର୍ବହରାମାନଙ୍କର କିଛି ହରାଇବାର ନାହିଁ । ଜୟ କରିବା ଲାଗି ଗୋଟାଏ ପୃଥିବୀ ସେମାନଙ୍କ ପାଖରେ ଅଛି । ବିଶ୍ୱର ସମସ୍ତ ଶ୍ରମିକ, ଏକଜୁଟ ହୁଅ । (The proletarians have nothing to lose but their chains. They have a world to win. Workers of the world, Unite !) ମାର୍କସ୍ଙ୍କ କଥା ନକହି ଶ୍ରମିକ ଦିବସ କଥା କହିବା ପ୍ରାୟତଃ ପୁରୀ ଯାଇ ଜଗନ୍ନାଥ ମନ୍ଦିର ଦର୍ଶନ ନକରିବା ସହ ସମାନ । ସର୍ବହରା ଶବ୍ଦ ସହିତ ମାର୍କସ୍ଙ୍କ

ଦର୍ଶନ ଠିକ୍ ଭାଙ୍ଗପଣା ସହ ରସାବଳି ଖାଇବା ପରି ଲାଗେ । ଏକଦା ଓଡ଼ିଆ କବିତାରେ ମାର୍କସ୍‌ଙ୍କ ଦର୍ଶନ ଓ ଚେତନା ତା'ର ଡ଼େଣା ମେଲାଇ ରଖିଥିଲା । ସଚ୍ଚି ରାଉତରାୟଙ୍କ କବିତା 'କୋଣାର୍କ'ରେ ଏହାର ଅବତାରଣା ଖୁବ୍ ଚମତ୍କାର ଭାବେ କରାଯାଇଛି । କୋଣାର୍କ ମନ୍ଦିରର ନଗ୍ନ ଚିତ୍ର କଳା ଦେଖି ଉତ୍‌ଫୁଲ୍ଲିତ ହେଉଥିବା ରୋମାଣ୍ଟିକ୍ ଦର୍ଶକଙ୍କୁ ଏଇ ଅପୂର୍ବ କାରୁକାର୍ଯ୍ୟ ପଛରେ ହଜାର ହଜାର ନିରବଚ୍ଛିନ୍ନ ସାଧନା, ସଂଘର୍ଷ ଓ ଦୈନ୍ୟ ଲୁଚି ରହିଥିବା କଥା ସଚ୍ଚିବାବୁ ପାଠକମାନଙ୍କୁ ମନେପକାଇଛନ୍ତି ।

ଏବେ ସେ ସମୟ ବଦଳି ଯାଇଛି । ସାଂପ୍ରତିକ ସମାଜର ପ୍ରତିଧ୍ୱନି ଏବେ ଭିନ୍ନପ୍ରକାରର । ଅର୍ଥନୈତିକ ଉଦାରୀକରଣ ଏବଂ ଭୂମଣ୍ଡଳୀକରଣ ଯୋଗୁଁ ସମଗ୍ର ବିଶ୍ୱରେ ଏବେ ଅଭୂତପୂର୍ବ ପରିସ୍ଥିତି । ସମଗ୍ର ବିଶ୍ୱକୁ ଗୋଟିଏ ବଜାର କରିବାର ପରିକଳ୍ପନା ଯୋଗୁଁ ଆମ ଶ୍ରମ ନୀତି ଓ ବିଧାନମାନଙ୍କରେ ପରିବର୍ତ୍ତନ ଆଣିବା କଥା ଖୁବ୍ ଗଭୀରତାର ସହ ବିଚାର କରାଯାଉଛି । ଶ୍ରମିକ ଓ ମାଲିକମାନଙ୍କ ଭିତରେ ପୂର୍ବରୁ ଚାଲି ଆସୁଥିବା ପ୍ରତିଦ୍ୱନ୍ଦୀ ମନୋଭାବ ବଦଳି ଯାଇ ସହଯୋଗ ଏବଂ ସମନ୍ୱୟର ଧାରା ଏବେ ସୃଷ୍ଟି ହେଉଛି । ଏସବୁ ବ୍ୟତିରେକେ ଭାରତୀୟ ଶିଳ୍ପାନୁଷ୍ଠାନର ବିକାଶ ତ ଦୂରର କଥା, ଅଭ୍ୟୁଦୟ ହୋଇପରିବ ନାହିଁ । ଅଥଚ ସେଦିନ ସଂଧ୍ୟାରେ ବରିଷ୍ଠ ଶ୍ରମିକ ନେତା ଜଣକ ଚିରାଚରିତ ଢଙ୍ଗରେ ଶ୍ରମିକମାନଙ୍କୁ ଉଦ୍‌ଭ୍ରାନ୍ତ କରିବା ଲାଗି ଏବଂ ନିଷ୍ଫଳ କରତାଳି ପାଇବା ଆଶାରେ ଯେଉଁ ଭାଷଣଟି ଦେଲେ, ସେଥିରୁ ତାଙ୍କର ଅଜ୍ଞତା ବେଶ୍ ବାରି ହୋଇପଡୁଥିଲା ।

ସେ ହୁଏତ ଆବ୍ରାହମ୍ ଲିଙ୍କନ୍‌ଙ୍କ ସେଇ ପ୍ରସିଦ୍ଧ ବକ୍ତବ୍ୟଟି ଭୁଲିଯାଇଥିଲେ : ମୁଁ ଭାବୁଛି- ଯଦି ସର୍ବନିୟନ୍ତାଙ୍କର ଦଳେ ମଣିଷ ଗଢ଼ିବାର ଇଚ୍ଛା ଥିଲା ଯେଉଁମାନେ କେବଳ ଖାଇବେ ଏବଂ କୌଣସି କାମ କରିବେ ନାହିଁ ସେ କେବଳ ସେମାନଙ୍କର ପାଟି ତିଆରି କରିଥାନ୍ତେ, ଆଦୌ ହାତ ଦେଇ ନଥା'ନ୍ତେ ଏବଂ ସେ ଯଦି ଆଉ ଏକ ଗୋଷ୍ଠୀର ମଣିଷ ଗଢ଼ିଥା'ନ୍ତେ ଯେଉଁମାନେ କେବଳ କାମ କରୁଥା'ନ୍ତେ ଏବଂ ଆଦୌ ଖାଉନଥା'ନ୍ତେ ତେବେ ସେମାନଙ୍କୁ ସେ କେବଳ ହାତ ଦେଇଥା'ନ୍ତେ, ଆଦୌ ପାଟିଟିଏ ଦେଇ ନଥା'ନ୍ତେ ।'' ସେଦିନ ସଂଧ୍ୟାରେ ଶ୍ରମିକ ନେତାଙ୍କ ଭାଷଣ ଶୁଣି ଏକାନ୍ତରେ ଫେରୁଥିବା ସମୟରେ କୈଶୋର ଜୀବନର ଏକ ଘଟଣା ମନେ ପଡ଼ିଗଲା । ଏକଦା ସହରର କୌଣସି ଏକ ଗଳିରୁ କିଛି ବ୍ୟକ୍ତି ନିଶାର୍ଦ୍ଧରେ 'ଚୋର' ବୋଲି ପାଟି କରି ଦୌଡୁଥିବା ଖବର ପ୍ରଚାରିତ ହୋଇଥିଲା । ପରବର୍ତ୍ତୀ କାଳରେ ପୋଲିସ୍ ସୂତ୍ରରୁ ପ୍ରକାଶ ପାଇଥିଲା ଯେ ନିଶାର୍ଦ୍ଧରେ ନିର୍ଜନ ରାସ୍ତାରେ ଚିତ୍କାର କରି ଯାଉଥିବା ବ୍ୟକ୍ତିମାନେ ହିଁ ଚୋର ଦଳର ସକ୍ରିୟ ସଭ୍ୟ ଥିଲେ । ଅନ୍ୟ ଲୋକଙ୍କ ହାବୁଡ଼ରୁ ରକ୍ଷା ପାଇବା ପାଇଁ ସେମାନେ ଏପରି କୌଶଳ ପ୍ରୟୋଗ କରିଥିଲେ ।

ମନେହେଉଥିଲା, ନିଜ ସ୍ୱାର୍ଥର ବୁଢ଼ିଆଣୀ ଜାଲରେ ଛନ୍ଦି ହୋଇପଡ଼ିଥିବା ଶ୍ରମିକ ନେତାଜଣକ ନିଜର ପରିଚୟ ଜଣାପଡ଼ିବା ଆଶଙ୍କାରେ ଅନ୍ୟକୁ 'ତସ୍କର' ବୋଲି ଅଭିହିତ କରୁଥିଲେ, ସେଥିରୁ ମୁକୁଳିଯିବା ଲାଗି ।



# ଚନ୍ଦନ ବନରେ ଏକା

**ଗ**ତ ଜୁଲାଇ ୩୦ ତାରିଖ ରାତିରେ କୁଖ୍ୟାତ ଚନ୍ଦନକାଠ ତସ୍କର ବୀରାପ୍ପାନ କର୍ଣ୍ଣାଟକ ତଥା ଦାକ୍ଷିଣାତ୍ୟର ଲୋକପ୍ରିୟ ଓ ଦାଦା ସାହେବ ଫାଲ୍‌କେ ପୁରସ୍କାରପ୍ରାପ୍ତ ଚିତ୍ରତାରକାଙ୍କୁ ଅପହରଣ କରିନେବାର ଦୁଇ ସପ୍ତାହରୁ ଉର୍ଦ୍ଧ୍ୱ ସମୟ ଯା' ଭିତରେ ବିତିଗଲାଣି । ଯେଉଁଦିନ ଏ ଖବର କର୍ଣ୍ଣାଟକରେ ପ୍ରସାରିତ ହେଲା, ସାରା ରାଜ୍ୟରେ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି ହେଲା । ଫଳତଃ ସେଇଦିନଠାରୁ ରାଜ୍ୟର ସମସ୍ତ ସିନେମାହଲ୍ ଗୁଡ଼ିକ ବନ୍ଦ ରହିଲା । ଶିଳ୍ପାନୁଷ୍ଠାନଗୁଡ଼ିକ ଦୁଇ ଦିନ ଯାଏଁ କୌଣସି ଉତ୍ପାଦନ କରିପାରିଲେ ନାହିଁ । ଦୁଇ ସପ୍ତାହ ଧରି ଏଇ ଅପହରଣ ନାଟକ ଯୋଗୁଁ ସମସ୍ତ ବୈଷୟିକ ଶିକ୍ଷାନୁଷ୍ଠାନମାନ ବନ୍ଦ ରହିବା ଫଳରେ ଛାତ୍ରମାନଙ୍କ ପାଠ୍ୟକ୍ରମ ଓ ପରୀକ୍ଷା ନେଇ ଗୁରୁତର ବିଶୃଙ୍ଖଳା ସୃଷ୍ଟି ହୋଇଛି ବୋଲି ମଧ୍ୟ ଅଭିଯୋଗ ହୋଇଛି । ଶିଳ୍ପାନୁଷ୍ଠାନର କର୍ମକର୍ତ୍ତାମାନେ ବିଶୃଙ୍ଖଳା ଆଶଙ୍କା କରି ବାଙ୍ଗାଲୋର ସହରକୁ ସେମାନଙ୍କ ଯାତ୍ରା ସ୍ଥଗିତ କରିଦେବା ଫଳରେ ସେଠାକାର ହୋଟେଲ୍ ଏବଂ ମଦ୍ୟଶାଳା ଗୁଡ଼ିକ ଜନଶୂନ୍ୟ ହୋଇ ପଡ଼ିଛି । ଏହାଛଡ଼ା, ରାଜ୍ୟ ସରକାର ପ୍ରଭୂତ ରାଜସ୍ୱ ହରାଇବା ସହ ବିଦେଶୀ ଶିଳ୍ପପତିଙ୍କ ସହ ରାଜ୍ୟ ପାଇଁ ପ୍ରାୟ ସତେଇଶି ହଜାର କୋଟି ଟଙ୍କା ପୁଞ୍ଜି ଖଟାଇବା ପାଇଁ ସ୍ୱାକ୍ଷର କରିଥିବା ପ୍ରସ୍ତାବ ଏବେ ନାକଚ ହୋଇଯିବାର ଆଶଙ୍କା ମଧ୍ୟ ଦେଖାଦେଇଛି ।

ଅବଶ୍ୟ ବୀରାପ୍ପାନଠାରୁ ପ୍ରାପ୍ତ ଭିଡ଼ିଓ ଟେପ୍‌ରେ ଚିତ୍ର ତାରକା ରାଜକୁମାରଙ୍କ ସ୍ୱାସ୍ଥ୍ୟ ଭଲ ଥିବା ଏବଂ ନିଜେ ରାଜକୁମାର ଶାନ୍ତି ରକ୍ଷା କରିବା ଲାଗି କର୍ଣ୍ଣାଟକ ଏବଂ ତାମିଲ୍‌ନାଡୁର ଜନତାଙ୍କୁ ଅନୁରୋଧ କରିବା ପରେ ପରିସ୍ଥିତିରେ କିଛିଟା ଉନ୍ନତି ଘଟିଛି ।

ରାଜକୁମାର ହେଉଛନ୍ତି କର୍ଣ୍ଣାଟକର ଏକ ସାଂସ୍କୃତିକ ସମ୍ପତ୍ତି । ହୁଏତ ଏଇ କଥାଟି ବୀରାପ୍ପାନ ମର୍ମେମର୍ମେ ବୁଝେ । ସେଇଥିପାଇଁ ତ ଦୀର୍ଘ ବର୍ଷକ ଆଗରୁ ରାଜକୁମାରଙ୍କୁ ଅପହରଣ କରିବାର ଯୋଜନା ସେ ଆରମ୍ଭ କରିଥିଲା । ଅପହରଣ ନାଟକ ସୂତ୍ରପାତ କରି ବୀରାପ୍ପାନ ସରକାରଙ୍କଠାରୁ ପ୍ରଭୂତ ଅର୍ଥ ଏବଂ ଅସ୍ତ୍ରଶସ୍ତ୍ର ଆଦାୟ କରିବା କିଛି ନୂଆ କଥା ନୁହେଁ । ମାତ୍ର ଦୁଇ ତିନି ବର୍ଷ ତଳେ ମଧ୍ୟ ସେ ଏପରି ଅବସ୍ଥା ସୃଷ୍ଟି କରିଥିଲା ।

ବୀରାପ୍ପାନର ମାତ୍ରାଧିକ୍ୟ ଅତ୍ୟାଚାର ଏବଂ ସେ ରହୁଥିବା ଜଙ୍ଗଲରେ ଭୌଗୋଳିକ ଅବସ୍ଥିତି ତା'ର କାର୍ଯ୍ୟକଳାପ ପାଇଁ ଅନୁକୂଳ ହେଉଥିବାରୁ ସେତେବେଳେ ବୀରାପ୍ପାନକୁ ଧରିବା ପାଇଁ ଉଭୟ କର୍ଣ୍ଣାଟକ ଏବଂ ତାମିଲ୍‌ନାଡୁ ସରକାରଙ୍କ ମିଳିତ ଉଦ୍ୟମରେ ଏକ ଟାସ୍କ

ଫୋର୍ସ ମଧ୍ୟ ଗଠନ କରାଯାଇଥିଲା । ମାତ୍ର ସମୟକ୍ରମେ ଏହାର କାର୍ଯ୍ୟକଳାପ ଅଧିକାଂଶ ସରକାରୀ ଯୋଜନା ପରି ଶିଥିଳ ହୋଇପଡ଼ିଗଲା । ଏବେ ବୀରାପ୍ପାନ ପୁନର୍ବାର ସକ୍ରିୟ ହେବା ବେଳେ ହିଁ ଦୂରଦର୍ଶନର ପ୍ରସାରିତ କାର୍ଯ୍ୟକ୍ରମରେ ଏଇ ଟାସ୍କଫୋର୍ସର ତତ୍କାଳୀନ ମୁଖ୍ୟ ଦୁଇଟିଯାକ ରାଜ୍ୟ ସରକାରଙ୍କ ପ୍ରୋତ୍ସାହନର ଅଭାବ ତଥା ବୈମାତୃକ ଭାବ ଯୋଗୁଁ ବୀରାପ୍ପାନକୁ ଧରିବାର ଅଭିଯାନ ନିଷ୍କ୍ରିୟ ହୋଇଯାଇଥିବା କଥା ଘୋଷଣା କରିଛନ୍ତି ।

ଗୋଟିଏ ରାଜ୍ୟ ହୋଇଥିଲେ ହୁଏତ ଘଟଣା ଅନ୍ୟପ୍ରକାର ହୋଇଥା'ନ୍ତା । ମାତ୍ର ପଡ଼ୋଶୀ ଶବ୍ଦଟି ଲାଗିଥିବାରୁ ଯୁଗେଯୁଗେ ଏଇ ଅସୁବିଧା । ଯଦିଓ ବାଇବେଲ୍‌ରେ କୁହାଯାଇଛି ତୁମେ ତୁମକୁ ଭଲ ପାଇବା ପରି ତୁମର ପଡ଼ୋଶୀକୁ ଭଲପାଅ-ମାତ୍ର ଏଇ ଆପ୍ତବାକ୍ୟଟିକୁ ପାଳନ କରିବା ଅଧିକାଂଶଙ୍କ ପକ୍ଷରେ ସମ୍ଭବ ହୋଇପାରୁନି । ସେଇଥିପାଇଁ ପରିହାସ ଛଳରେ ଜଣେ କହିଥିଲେ : 'ତୁମର ପଡ଼ୋଶୀକୁ ଭଲପାଅ, ମାତ୍ର ତୁମେ ତିଆରି କରିଥିବା ବାଡ଼ଟିକୁ ଭାଙ୍ଗ ନାହିଁ ।

ପଡ଼ୋଶୀର ସୁଖରେ ଦୁଃଖୀ ହୋଇଯିବା ସାଂପ୍ରତିକ ସମୟର ଏକ ବିଲକ୍ଷଣ ମାତ୍ର । ତଥାପି ମଣିଷର ଆନ୍ତରାତ୍ମାର ପରିବର୍ତ୍ତନ ନ ହେବାଯାଏଁ ଏଇ ଘୁଣ ପୋକଟି ତା'ର ଆତ୍ମାକୁ ଫମ୍ପା କରିଦେବ ଏଥିରେ ସନ୍ଦେହ ନାହିଁ ।

ପ୍ରସଙ୍ଗକ୍ରମେ କାହାଣୀଟି ମନେପଡ଼ୁଛି : ଥରେ ଜଣେ ବ୍ୟକ୍ତି ଈଶ୍ୱରଙ୍କ ପାଖରେ ପ୍ରାର୍ଥନା କରନ୍ତେ ଈଶ୍ୱର ପ୍ରସନ୍ନ ହୋଇ ତାକୁ ଏକ ସର୍ତ୍ତମୂଳକ ବରପ୍ରଦାନ କଲେ । ସର୍ତ୍ତଟି ଥିଲା ବ୍ୟକ୍ତିଟି ଯାହା ମାଗିବ ତାକୁ ତାହା ମିଳିଯିବ ମାତ୍ର ସେ ଯାହା ପାଇବ, ତା'ର ପଡ଼ୋଶୀକୁ ଉକ୍ତ ପ୍ରାପ୍ତିର ଦୁଇଗୁଣ ମିଳିବ । ବ୍ୟକ୍ତିଜଣକ ପରଦିନ ସକାଳୁ ଈଶ୍ୱର ତାକୁ ଗୋଟିଏ ଗାଈ ଦିଅନ୍ତୁ ବୋଲି ଇଚ୍ଛା କରିବାମାତ୍ରେ ସେ ଗୋଟିଏ ଗାଈ ପାଇଗଲା ମାତ୍ର ତା'ର ପଡ଼ୋଶୀକୁ ଦୁଇଟି ଗାଈ ମିଳିଗଲା । ବ୍ୟକ୍ତିଟି ଈଶ୍ୱରଙ୍କୁ ଦୁଇଟି ବଳଦ ପାଇଁ ପ୍ରାର୍ଥନା କରନ୍ତେ ଈଶ୍ୱର ତାକୁ ଦୁଇଟି ବଳଦ ଏବଂ ପଡ଼ୋଶୀକୁ ଚାରୋଟି ବଳଦ ଦେଇଦେଲେ । ଏହାହିଁ ବ୍ୟକ୍ତିଟିର ଦୁଃଖର ଚରମ କାରଣ ହୋଇଗଲା । ଏଥର ବ୍ୟକ୍ତିଟି ଈଶ୍ୱରଙ୍କୁ ତା'ର ଗୋଟିଏ ଆଖି ଫୁଟିଯାଉ ବୋଲି ପ୍ରାର୍ଥନା କଲା । ଫଳତଃ ତା'ର ଗୋଟିଏ ଆଖି ଫୁଟିଯିବା ସହ ତା'ର ପଡ଼ୋଶୀଟି ସଂପୂର୍ଣ୍ଣ ଅନ୍ଧ ହୋଇଗଲା । ପଡ଼ୋଶୀ ପ୍ରତି ଥିବା ଆମର ଦୃଷ୍ଟିଭଙ୍ଗୀ ଏଇ କାହାଣୀର ବକ୍ତବ୍ୟ ଭିତରେ ସୀମାବଦ୍ଧ ହୋଇଥିଲେ ଭଲ ହୋଇଥା'ନ୍ତା ।

ଏହା କେବଳ ବ୍ୟକ୍ତି ବ୍ୟକ୍ତି ଭିତରେ ସୀମିତ ନରହି ରାଜ୍ୟ ରାଜ୍ୟ ଏବଂ ଦେଶଦେଶ ପର୍ଯ୍ୟନ୍ତ ସଞ୍ଚରି ଯାଇଛି । ରାଜ୍ୟରାଜ୍ୟ ଭିତରେ ଥିବା ଅସୂୟା ଓ ଅସହିଷ୍ଣୁ ଭାବ-ଯଜ୍ଞରୁ ହିଁ ବୀରାପ୍ପାନମାନଙ୍କର ଜନ୍ମ ଘଟିଥାଏ ।

ଶହେକୋଟି ଟଙ୍କା ମୂଲ୍ୟର ଚନ୍ଦନ କାଠ ଚୋରି କରିବା ସହ ଦୁଇ ହଜାର ହାତୀଙ୍କ ସମେତ ପ୍ରାୟ ଦେଢ଼ଶହ ବ୍ୟକ୍ତିଙ୍କୁ ହତ୍ୟା କରିଥିବା ଏଇ କୁଖ୍ୟାତ ତସ୍କରର ବ୍ୟବହାରରେ ଅନେକ ପରିବର୍ତ୍ତନ ଲକ୍ଷ୍ୟ କରିଛନ୍ତି ତାମିଲ୍ ପତ୍ରିକା ନକ୍କିରନ୍‌ର ସମ୍ପାଦକ ଗୋପାଳ । ଦୁଇ ରାଜ୍ୟର ଦୂତ ଭାବେ ସେ ଏବେ ରାଜକୁମାରଙ୍କୁ ମୁକ୍ତ କରିବାରେ ସଫଳ ହେବେ କି ନାହିଁ, ସେକଥା ସମୟ ଉପରେ ଛାଡ଼ି ଦିଆଯାଉ, ମାତ୍ର ନିଜକୁ କ୍ୟୁବାର ବିପ୍ଳବୀ ନେତା ଚି.ଗ୍ୱେଭେରାଙ୍କ ସମକକ୍ଷ ବୋଲି କଳ୍ପନା କରିବା ସହ ବୀରାପ୍ପାନ ନିଜ ପାଇଁ ଅସ୍ତ୍ରଶସ୍ତ୍ର କିମ୍ବା ବିପୁଳ ଅର୍ଥ ଦାବି କରିବା ପରିବର୍ତ୍ତେ ଏଥର କାବେରୀ ଜଳ ବିବାଦକୁ ସମାଧାନ କରିବା ଲାଗି ଆନ୍ତର୍ଜାତିକ ବିଚାରାଳୟକୁ ଏଇ ବିବାଦ ହସ୍ତାନ୍ତର କରିବା ପାଇଁ ପ୍ରସ୍ତାବ ଦେବା ଓ ଅନ୍ୟାନ୍ୟ ଅହେତୁକ ଦାବି ସବୁ ସ୍ପଷ୍ଟ ସୂଚାଇ ଦେଉଛି ଯେ ଚନ୍ଦନ ବନରେ ବୀରାପ୍ପାନ ଆଦୌ ଏକା ନୁହେଁ ।

ତେବେ ଏଇ ଗଭୀର ଷଡଯନ୍ତ୍ରର ଅସଲ କଥା ଜାଣିବା ପାଇଁ ହୁଏତ ଆଉ କିଛିକାଳ ଅପେକ୍ଷା କରାଯାଇପାରେ, ମାତ୍ର ତସ୍କର ଏବଂ ରାଜନୈତିକ ନେତାମାନଙ୍କର ଅନାବିଳ ପ୍ରେମର ଏହା ଏକ ନିଛକ୍ ନମୁନା ବୋଲି ଆମକୁ ଗ୍ରହଣ କରିନେବାରେ ଆଦୌ ଅସୁବିଧା ହେବନାହିଁ ।



# ପୁନଶ୍ଚ ପ୍ରତ୍ୟାବର୍ତ୍ତନ

**ପ୍ରା**ୟ କେଇମାସ ହେବ କୌଣସି ଏକ ଲେଖାଟିଏ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ଏଇ ସ୍ତମ୍ଭିକ ନିୟମିତ ଲେଖା ପଠାଇବାରୁ ବିରତ ରହିଥିଲା । ମାତ୍ର ନିର୍ଦ୍ଧାରିତ ସମୟରେ ଉକ୍ତ ଲେଖାଟି ପ୍ରସ୍ତୁତ ହୋଇ ନପାରିବାରୁ ଲେଖକ ଉକ୍ତ ଆନ୍ତର୍ଜାତୀୟ ପ୍ରତିଯୋଗିତାରେ ଅଂଶଗ୍ରହଣ କରିପାରିନଥିଲା ।

ସ୍ତମ୍ଭ ରଚନା ସ୍ୱଳ୍ପକାଳ ପାଇଁ ସ୍ଥଗିତ ରଖିବା କାଳରେ ଏ ଲେଖକ ଅନେକ ଶୁଭେଚ୍ଛୁଙ୍କଠାରୁ ତାଗିଦ୍ ପାଇବା ସହ କିଛି ପ୍ରିୟ ପାଠକଙ୍କ ଅନୁରୋଧ ମଧ୍ୟ ପାଇଛି । ସେଇ ସମୟରେ କ୍ଷଣଟିଏ ହେଲେ ମଧ୍ୟ ଅନୁଭବ ହୋଇଛି ଯେ ଏ ଲେଖକର କିଛି ପ୍ରିୟ ପାଠକ ତଥା ସମାଲୋଚକ ମଧ୍ୟ ରହିଛନ୍ତି । ଅବଶ୍ୟ ପାଠକୀୟ ଶ୍ରଦ୍ଧା ଏବଂ ସମାଲୋଚକୀୟ ପୁରୋଦୃଷ୍ଟି ହିଁ ଯେକୌଣସି ସୃଜନକଳାର ଅଭିବୃଦ୍ଧି ପାଇଁ ସହାୟକ ହୋଇଥାଏ, ଏହା କହିବା ଏଠି ଅପ୍ରାସଙ୍ଗିକ ହେବନାହିଁ ।

କୌଣସି କାଳରେ ଏ ଲେଖକ ବେଶୀ ଲେଖିପାରେ ନାହିଁ; ସେପରି ତତ୍ତ୍ୱରେ ମଧ୍ୟ ବିଶ୍ୱାସ ରଖିପାରେ ନାହିଁ । ପରିହାସ ଛଳରେ କେବେକେବେ ଶହେଜଣ କୌରବଙ୍କ ଅପେକ୍ଷା ମାତ୍ର ପାଞ୍ଚଜଣ ପାଣ୍ଡବ ହିଁ ଶ୍ରେୟସ୍କର ସତ୍ୟ ପ୍ରତିଷ୍ଠା ପାଇଁ ବୋଲି ଯୁକ୍ତି କରେ । ଗୋଟିଏ ଲେଖା ଲେଖକର ହାତରେ ଉତୁରିବା ପାଇଁ କେତେ ସମୟ ଲାଗେ ବୋଲି କବି ଦେବଦାସ ଛୋଟରାୟଙ୍କୁ କେହିଜଣେ ପ୍ରଶ୍ନ କରିଥିଲେ ଏବଂ ଉତ୍ତରରେ ନିଜର ଗୀତ ସମ୍ପର୍କରେ ସେ କହିଥିଲେ : ଛଅ ମିନିଟ୍ରୁ ଛଅ ବର୍ଷ ଲାଗେ, ପ୍ରକାରାନ୍ତରେ ଶ୍ରୀ ଛୋଟରାୟ ସୂଚାଇ ଦେଇଥିଲେ ଯେ ସୃଜନକଳାର ରୂପରେଖ ପାଇଁ କୌଣସି ନିର୍ଦ୍ଦିଷ୍ଟ ସମୟ ନିରୂପଣ କରିବା ଏକ ହାସ୍ୟାସ୍ପଦ ଘଟଣା ।

ସେଇଥିପାଇଁ କେହିକେହି ଲେଖା ମାଡ଼ିଲେ ଲେଖନ୍ତି ବୋଲି ହୁରି ପକାଇଲା ବେଳେ ଆଉ କିଛି ଲେଖକ ଲେଖିବା କାମଟି ସେମାନଙ୍କ ପାଇଁ ଅତ୍ୟନ୍ତ ସହଜ ଓ ସରଳ କାମ ବୋଲି ଯୁକ୍ତି କରିଥାନ୍ତି । ନିଜନିଜ ଯୁକ୍ତିରେ ସେମାନେ ଠିକ୍ କଥା କହିଥାନ୍ତି । ତେବେ ସୃଜନକ୍ରିୟା ସହ ନିରବତାର ଘନିଷ୍ଠ ତଥା ନିବିଡ଼ ସମ୍ପର୍କ ରହିଥିବା କଥା ପ୍ରତିଟି ସୃଜନକର୍ମୀ ସ୍ୱୀକାର କରିବେ ଏଥିରେ ସନ୍ଦେହ ନାହିଁ । ସବୁ ଶିଳ୍ପୀ ଏଇ ନିରବତାର ଅହେତୁକ ପ୍ରେମରେ ଅନେକ ସମୟରେ ବୁଡି ରହିଥିବାର ନଜିର ଆମ ପାଖରେ ମହଜୁଦ୍ ଅଛି । ବୁଡିବା ଏବଂ ଆତ୍ମତାମାତ୍ମତା ହେବା ଦୁଇଟି ଭିନ୍ନ ପର୍ଯ୍ୟାୟର କଥା । ଜଣେ ସୃଜନଶୀଳ ଲେଖକ ନିରବତାର ଅମୃତ କେତେ

ପରିମାଣ ଆତ୍ମସ୍ଥ କରିବ, ତା'ରି ଉପରେ ହିଁ ନିର୍ଭର କରିବ ତା'ର ସୃଷ୍ଟି କ୍ଷମତାର ପରବର୍ତ୍ତୀ ଯୋଜନା ।

ଭାରତୀୟ ଲେଖକ ଏବଂ କବିମାନଙ୍କଠାରୁ ଆରମ୍ଭ କରି ଚିତ୍ରଶିଳ୍ପୀମାନେ ନିରବତାର ମାୟାଜାଲରେ ଛନ୍ଦି ହୋଇ ଆସିଛନ୍ତି । ସେମାନଙ୍କ ମଧ୍ୟରେ କବି ଡମ୍ ମରିସ୍, ଦିଲୀପ ଚିତ୍ରେ ଏବଂ ଅରୁଣ କୋହ୍ଲାଟକର ପ୍ରମୁଖ । ନିଜର ପ୍ରଥମ କବିତା ବହି ଛାପିବାର ସତର ବର୍ଷ ଯାଏ କବିତା ଲେଖିବା ଛାଡ଼ି ଦେଇଥିଲେ ଡମ୍ ମରିସ୍ । ପରେ ଅବଶ୍ୟ ଖୁବ୍ ସୁନ୍ଦର କବିତା ଲେଖି ପାଠକଙ୍କୁ ଉପହାର ଦେଇଥିଲେ ସେ । ଠିକ୍ ସେଇପରି ନିଜର ବୋହେମିଆନ୍ ସ୍ୱଭାବ ପାଇଁ ଅରୁଣ କୋହ୍ଲାଟକର ଏବଂ କବି ଦିଲୀପ ଚିତ୍ରେ ବେଶ୍ ଜଣାଶୁଣା । ଓଡ଼ିଆ ସାହିତ୍ୟରେ ଠିକ୍ ସେହିପରି ଚରିତ୍ରର ଅଭାବ ନାହିଁ । ନିଜର ଏକମାତ୍ର ତଥା ସାର୍ଥକ ସୃଷ୍ଟି ପରେ ବି 'ସମୁଦ୍ର ସ୍ନାନ'ର କବି ଗୁରୁପ୍ରସାଦ ମହାନ୍ତି ନିରବତାର ଢେଉ ଭାଙ୍ଗିବାରେ ବ୍ୟସ୍ତ । ସୁଖର କଥା ଅନେକ ବର୍ଷର ମୌନତା ଭାଙ୍ଗି ବେଶ୍ କିଛି ବର୍ଷ ହେଲା ଆମମାନଙ୍କୁ ଭେଟି ଦେଉଛନ୍ତି ସୁନ୍ଦର କବିତା, କବି ଭାନୁଜୀ ରାଓ । ଏଇ ପରିପ୍ରେକ୍ଷୀରେ ଆଉ ଜଣେ ସାହିତ୍ୟରଥୀ ମନକୁ ଆସିଯାନ୍ତି ଆପଣାଛାଏଁ । ଗୋବିନ୍ଦ ଦାସ-ଯିଏ ଗୋଟିଏମାତ୍ର ଉପନ୍ୟାସ 'ଅମାବାସ୍ୟାର ଚନ୍ଦ୍ର' ଲେଖି ଲୋକପ୍ରିୟ ହେବା ପରେ -ବହୁ ବର୍ଷ ଯାଏ ନିରବ ରହିଥିଲେ । ଅବଶ୍ୟ ପରେ ସେ ଯେଉଁ କେତୋଟି କ୍ଷୁଦ୍ର ଉପନ୍ୟାସ ଲେଖିଥିଲେ ତାହାକୁ ପାଠକୀୟ ଆଦୃତି ପାଇବାର ସୌଭାଗ୍ୟ ମିଳି ନଥିଲା । ହୁଏତ ଔପନ୍ୟାସିକ ଶ୍ରୀ ଦାସଙ୍କ ପାଇଁ ଆଉ କିଛି ନିରବତାର ଆବଶ୍ୟକତା ଥିଲା । ଯେଉଁ ନିରବତା ତାଙ୍କର ମାନସିକତାକୁ ଅଧିକ ସମ୍ବେଦନଶୀଳ କରିବାରେ ସହାୟକ ହୋଇଥାନ୍ତା ଏବଂ କାରଲାଇଲ୍‌ଙ୍କ ଉକ୍ତିକୁ ପୁଣିଥରେ ଦୋହରାଇଥାନ୍ତା : 'ନିରବତା ହେଉଛି ଏକ ମୌଳିକ ଜିନିଷ, ଯାହା ମହାର୍ଘ ଘଟଣାମାନ ସୃଜିଥାଏ ।' (Silence is the element in which great things fashion themselves)

ପରିହାସ ଛଳରେ ଏଠି ଆମ ଭାଷାର କିଛି ଲେଖକଙ୍କୁ ନିଆଯାଇପାରେ । ବର୍ଷସାରା ସେମାନେ ନିରବ ରହିଥାନ୍ତି, ମାତ୍ର ଛତୁ ଫୁଟିଲା ପରି ବିଶେଷତଃ ପୂଜା ସଂଖ୍ୟା ପାଇଁ ସେମାନେ କଲମ ଧରନ୍ତି । ଏହା ଯେ ସୃଜନ ପ୍ରକ୍ରିୟାର ବିରୁଦ୍ଧାଚାରଣ କରୁଛି-ଏହା କହିବା ନିଷ୍ପ୍ରୟୋଜନ । କାରଣ ବର୍ଷସାରା ବେଙ୍ଗ ମଧ୍ୟ ନିରବ ରହିଥାଏ । ମାତ୍ର ବର୍ଷା କାଳର ଆଗମନରେ ସେ ତା'ର ସ୍ୱରତନ୍ତ୍ରୀରେ ଯେଉଁ ରାଗିଣୀ ସୃଷ୍ଟି କରେ ତାହା ଜନମାନସକୁ ଆମୋଦିତ କରିପାରେ ନାହିଁ । ଅପରପକ୍ଷରେ, ଅନୁରୂପ ଭାବେ ସାରା ବର୍ଷ ଆତ୍ମନିର୍ବାସନରେ ଥିବା କୋଇଲିଟି ବସନ୍ତ ଋତୁରେ ତା'ର କୁହୁକୁହୁ ସ୍ୱର ଯୋଗୁଁ ହୃଦୟରେ ଉଚ୍ଚାଟନ ସୃଷ୍ଟି କରିଥାଏ । ବାସ୍ତବିକ୍, ପ୍ରତିଟି ସୃଜନ ଶିଳ୍ପୀ କେବଳ ନିରବତାର ପରମ ଉପାସକ ନୁହେଁ ବରଂ ଆତ୍ମ ନିର୍ବାସନରେ ନିଜକୁ ଓ ନିଜପଣିଆକୁ ସୁରକ୍ଷା ଦେଇଥାଏ । ନିଶାର୍ଦ୍ଧର ନିରବତାର

ଉର୍ଣ୍ଣନାଭ ଜନ୍ମ ଦେଇଥାଏ କଳ୍ପନାର ଅସରନ୍ତି ଖିଅମାନଙ୍କୁ । ସେଇଥିପାଇଁ ଏକଦା ମାକ୍‌ଲେଙ୍କ ଉଦ୍ଦେଶ୍ୟରେ ସିଡ୍‌ନୀ ସ୍ମିଥ୍ କହିଥିଲେ : ସେ କେବେକେବେ ହଠାତ୍ ଚୁପ୍ ରହିଯାନ୍ତି; ଯାହା ତାଙ୍କର ଅଲୋଚନା ସବୁକୁ ପୁରାପୁରି ଆନନ୍ଦଦାୟକ କରିଥାଏ । (He had occasional flashes of silence, that made his Conversation perfectly delightful.)

ଦୁଃଖର କଥା, ଏବେ ଅନେକ ସୃଜନଶିଳ୍ପୀ ନିରବତା ସହ ସାଲିସ୍ କରିବା ପରିବର୍ତ୍ତେ କୋଳାହଳର ପ୍ରେମରେ ପଡ଼ି ଯାଉଛନ୍ତି ।



# ଖୋଜିବା ଓ ପାଇବା

ଏବେ କାର୍‌ଗିଲ୍ କ୍ଷେତ୍ରରେ ଶତ୍ରୁପକ୍ଷ ବିରୁଦ୍ଧରେ ଲଢ଼େଇ କରୁଥିବା ଭାରତର ବୀର ସୈନିକମାନଙ୍କ ସମ୍ମାନାର୍ଥେ ଭାରତୀୟ କ୍ରିକେଟ୍ ଖେଳାଳୀ ଏବଂ ବଛାବଛା ଚଳଚ୍ଚିତ୍ର ତାରକାଙ୍କ ମଧ୍ୟରେ ଏକ ବନ୍ଧୁତ୍ୱପୂର୍ଣ୍ଣ ଖେଳର ପ୍ରସାରଣ ଦୂରଦର୍ଶନରୁ ଦେଖିବାର ସୁଯୋଗ ମିଳିଥିଲା । କ୍ରିକେଟ୍ ଖେଳାଳିମାନଙ୍କ ମଧ୍ୟରେ ଥିଲେ ଓଡ଼ିଶାର ଏକମାତ୍ର ଖେଳାଳି ଦେବାଶିଷ ମହାନ୍ତି । ବିଶ୍ୱକପ୍ ପ୍ରତିଯୋଗିତାରେ ନିଜର ବ୍ୟକ୍ତିଗତ ସଫଳତା ପାଇଁ ତାଙ୍କୁ ଖୁବ୍ ପ୍ରଶଂସା କରି ଭାରତର ଖବରକାଗଜମାନ ମଧ୍ୟ ଲେଖିଥିଲେ ।

ଦେବାଶିଷଙ୍କ ସଫଳତା ମଧ୍ୟ ଏ ଲେଖକ, ଅଗଣିତ କ୍ରିକେଟ୍‌ପ୍ରେମୀଙ୍କ ସହ କାମନା କରେ । ତେବେ ଗୋଟିଏ କଥା ଏଠି ମନକୁ ଆସେ, ଯଦିଓ ଦେବାଶିଷଙ୍କ ବ୍ୟକ୍ତିଗତ ସଫଳତା ପାଇଁ ତାଙ୍କର ପିତା ଏବେ ଗର୍ବ ଅନୁଭବ ପରୁଛନ୍ତି, ଭାରତୀୟ କ୍ରିକେଟ୍ ଖେଳାଳିଙ୍କ ସହ ଖେଳିବା ପାଇଁ ସୁଯୋଗ ପାଇବାର ଅନେକ ଆଗରୁ ତାଙ୍କର ପିତା ଦେବାଶିଷଙ୍କୁ ଏଇ ଖେଳ ପାଇଁ ଆଦୌ ଉତ୍ସାହିତ କରୁନଥିଲେ । ଏପରିକି ପୁତ୍ରର ଖେଳ ପ୍ରବଣତାକୁ ପିତା ନାପସନ୍ଦ କରୁଥିଲେ ବୋଲି ସମ୍ବାଦ ପ୍ରକାଶ ପାଇଥିଲା । ତେବେ ଏପ୍ରକାର ବାରଣ ଓଡ଼ିଶାର ପାଣିପାଗରେ ନୂଆ କଥା ନୁହେଁ । ପ୍ରତିଟି ବାପା ଚାହାଁନ୍ତି ତାଙ୍କର ପୁତ୍ର ଭଲ ପାଠ ପଢ଼ି ଭଲ ଚାକିରୀଟିଏ କରୁ । ମାତ୍ର ସ୍ରୋତର ପ୍ରତିକୂଳତାକୁ ବେଖାତିର୍ କରି କିଛି ଲୋକ ସେମାନଙ୍କ ଇପ୍‌ସିତ ଇଲାକାରେ ପହଞ୍ଚି ପାରନ୍ତି । ତାହା ହିଁ ଘଟିଛି ଦେବାଶିଷଙ୍କ ଭାଗ୍ୟରେ,ଏଇ ଇଲାକାରେ ପହଁଞ୍ଚିବା ପାଇଁ ତାଙ୍କୁ ହୁଏତ ଅନେକ ଶୁଭେଚ୍ଛୁ, ପରିଜନ ତଥା ନିକଟତମ ବନ୍ଧୁଙ୍କ ପ୍ରଭାବରୁ ମୁକ୍ତ ରହିବା ପାଇଁ କସରତ୍ କରିବାକୁ ପଡ଼ିଥିବ ।

ଏଇ ପରିପ୍ରେକ୍ଷୀରେ ମନକୁ ଆସିଯାଏ ବିଶିଷ୍ଟ ଦାର୍ଶନିକ ତଥା ଅସ୍ତିତ୍ୱବାଦର ଜଣେ ମୁଖ୍ୟ ପ୍ରବକ୍ତା ଫ୍ରାନ୍‌ଜ କାଫ୍‌କାଙ୍କ କଥା । ମ୍ୟାକ୍‌ସ ବ୍ରଡ୍ ଜଣେ ବ୍ୟବସାୟୀ ହେଲେବି କାଫ୍‌କାଙ୍କର ଅନ୍ତରଙ୍ଗ ବନ୍ଧୁ ଥିଲେ । ସବୁଠୁ ଆଶ୍ଚର୍ଯ୍ୟର କଥା ହେଲା ବ୍ରଡ୍‌ଙ୍କୁ ଜଣା ନଥିଲା ଯେ ତାଙ୍କର ବନ୍ଧୁ ଜଣେ ବିଶିଷ୍ଟ ଦାର୍ଶନିକ ତଥା ଲେଖକ ଥିଲେ ବୋଲି । କାରଣ ଲେଖିଥିବା କୌଣସି ଲେଖାକୁ ତାଙ୍କ ଜୀବଦ୍ଦଶାରେ ଛପାଇବା ଲାଗି ଦେଇନଥିଲେ । ମୃତ୍ୟୁଶଯ୍ୟାରେ ରହି ଶେଷ ନିଃଶ୍ୱାସ ତ୍ୟାଗ କରିବାର ଅବ୍ୟବହିତ ପୂର୍ବରୁ କାଫ୍‌କା ତାଙ୍କର ବନ୍ଧୁଙ୍କୁ ଅନୁରୋଧ କରିଥିଲେ ଯେ ସେ ତାଙ୍କ ଜୀବନ କାଳରେ କେତେଗୁଡ଼ିଏ ଏଣୁ ତେଣୁ ଲେଖିଥିବା ଲେଖା ଗୋଟିଏ ଡ୍ରାବଲ ଲୁଚାଇ ରଖିଛନ୍ତି ଏବଂ ବ୍ରଡ୍ ତାଙ୍କ ମୃତ୍ୟୁ ପରେ ସେଗୁଡ଼ିକୁ ନଷ୍ଟ କରିଦେବେ ।

କାଫ୍‌କାଙ୍କ ମୃତ୍ୟୁରେ କିଛିଦିନ ପରେ ତାଙ୍କ ଅନୁରୋଧକୁ ସମ୍ମାନ ଜଣାଇ ବ୍ରଡ୍ ଯେତେବେଳେ ଉକ୍ତ ପେଟିକାଟିକୁ ପୋଡ଼ି ନଷ୍ଟ କରିବାକୁ ଯିବା ସମୟରେ କୌତୁହଳବଶତଃ ପେଟିକାଟିକୁ ଖୋଲିଛନ୍ତି, ଅନ୍ୟାନ୍ୟ ରଚନା ସହିତ ସେଥିରୁ ବ୍ରଡ୍‌ଙ୍କୁ ମିଳିଥିଲା କାଫ୍‌କାଙ୍କ ଦ୍ୱାରା ଲିଖିତ ତେରବର୍ଷର ଡାଏରୀ, ବ୍ରଡ୍ ସେଇଟିକୁ ଆଗ୍ରହର ସହିତ ପଢ଼ିବାକୁ ଲାଗିଲେ । ଯଦିଓ ବିଶେଷ କିଛି ଆହରଣ କରିବା ଭଳି ବୁଦ୍ଧି ତାଙ୍କର ନଥିଲା, ତଥାପି ଏହାଯେ ଏକ ସ୍ୱତନ୍ତ୍ର ଏବଂ ଉଚ୍ଚକୋଟୀର ଲେଖା ସେକଥା ବୁଝିବାକୁ ତାଙ୍କୁ ବେଶୀ ଡେରି ହେଲାନି ।

ବନ୍ଧୁଙ୍କୁ ଦେଇଥିବା ପ୍ରତିଶ୍ରୁତି ବିପକ୍ଷରେ ଯାଇ ସେ ଉକ୍ତ ଡାଏରୀଟିକୁ ପ୍ରକାଶ କରିବା ଲାଗି ପଦକ୍ଷେପ ନେଲେ, କାଳେ ଉକ୍ତ ରଚନା ବିଶ୍ୱବାସୀଙ୍କ କିଛି କାମରେ ଲାଗିପାରେ ବୋଲି ଭାବିବା ପରେ । ତାଙ୍କ ଆଶା ସତ ହେଲା । ଏବେ ଉକ୍ତ ଡାଏରୀଟି ବିଶ୍ୱର ଏକ ମହାନ୍ ରଚନା ଭିତରେ ଅନ୍ୟତମ ଭାବେ ତାଲିକାଭୁକ୍ତ ହୋଇଛି । ଏଇ ଡାଏରୀର ଗୋଟିଏ ପୃଷ୍ଠାରେ କାଫ୍‌କୋ ଲେଖିଛନ୍ତି ଯେ ପାଠ ପଢ଼ିବା ଫଳରେ ତାଙ୍କ ଜୀବନ ନଷ୍ଟ ହୋଇଗଲା । ଏହା ହୁଏତ ସାଧାରଣ ପାଠକଙ୍କୁ ଠିକ୍ ମନେ ହୋଇନପାରେ, କାରଣ ପାଠପଢ଼ି ସମସ୍ତେ ମଣିଷ ହୁଅନ୍ତି ବୋଲି ଆମର ଧାରଣା । କିନ୍ତୁ କାଫ୍‌କା ତାଙ୍କର ଏଇ ମତ ପୋଷଣ କରିବାକୁ ଯାଇ କୈଫିୟତ୍ ଦିଅନ୍ତି ଯେ ତାଙ୍କ ଜୀବନକୁ ନଷ୍ଟ କରିବା ଲାଗି ସାରା ସମାଜ ଯେମିତି ମୁଣ୍ଡରେ ପାଗ ଭିଡ଼ି ବାହାରିଛି । ତାଙ୍କର କହିବା ଭାଷାରେ-ତାଙ୍କ ପିତାମାତା ତାଙ୍କୁ ଜୀବନରେ ଏକପ୍ରକାର ହେବାକୁ ଚାହୁଁଥିବା ବେଳେ, ତାଙ୍କର ଶିକ୍ଷକ ଆଉ ଏକପ୍ରକାର ହେବା ପାଇଁ ପ୍ରବର୍ତ୍ତାଉ ଥିଲେ । ଅଥଚ ସେ ନିଜେ କ'ଣ ହେବାକୁ ଚାହୁଁଛନ୍ତି-ସେଥିପ୍ରତି ପିତାମାତା ଅଥବା ଶିକ୍ଷକଙ୍କର ଚିନ୍ତା ନଥିଲା । ସେଥିପାଇଁ ହୁଏତ ସେ ଦୁଃଖରେ କହିଥିଲେ ସ୍କୁଲକୁ ଯିବା ଫଳରେ ତାଙ୍କ ଜୀବନ ନଷ୍ଟ ହୋଇଗଲା । ପ୍ରତିଟି ଜୀବନର ଲକ୍ଷ୍ୟ ହେଉଛି ପରମ ସନ୍ତୋଷ ପ୍ରାପ୍ତ ହେବା । ଅନେକ କିନ୍ତୁ ମୃଗନାଭି କସ୍ତୁରୀ ପରି ନିଜ ପାଖରେ ଥିବା ସନ୍ତୋଷଟିକୁ ଚିହ୍ନି ନପାରି ମରୀଚିକା ପଛରେ ଧାଇଁବାକୁ ପସନ୍ଦ କରିଥାନ୍ତି । ଅବଶ୍ୟ ସେମାନେ ଭୁଲ୍ ବାଟରେ ଯାଉଛନ୍ତି ବୋଲି ଅନୁଭବ ହେଲା ବେଳକୁ ସମୟ ଅତିକ୍ରାନ୍ତ ହୋଇଯାଇଥାଏ । ଗପଟିଏ କହେ । ଥରେ ଭଗବାନ ବିଷ୍ଣୁ ବିରକ୍ତ ହୋଇ ତାଙ୍କର ଜଣେ ଭକ୍ତକୁ କହିଲେ : 'ତୁମର ଅସରନ୍ତି ଅଭିଯୋଗ ଦରଖାସ୍ତ ପାଇଁ ମୋତେ ଚିଡ଼ା ଲାଗୁଛି । ଏଥର ମୁଁ ମାତ୍ର ତିନୋଟି ବର ପ୍ରଦାନ କରିବି, ତାହଠାରୁ ଅଧିକ ନୁହେଁ ।' ବିଷ୍ଣୁଙ୍କଠାରୁ ଏକଥା ଶୁଣିବା ମାତ୍ରେ ଭକ୍ତଟି ସଙ୍ଗେ ସଙ୍ଗେ ତା'ର ପ୍ରଥମ ଇଚ୍ଛାଟି ଭଗବାନ ବିଷ୍ଣୁଙ୍କ ପାଖରେ ପେଶ୍‌କଲା ।

: ପ୍ରଭୁ, ମୋ ସ୍ତ୍ରୀର ତୁରନ୍ତ ମୃତ୍ୟୁ ହେଉ ।'

: ତୁମେ ତୁମ ସ୍ତ୍ରୀର ମୃତ୍ୟୁ କାମନା କରୁଛ ? ବିଷ୍ଣୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

: ହଁ ପ୍ରଭୁ ! ସେ ଅସୁନ୍ଦରୀ, ତା'ର ମୃତ୍ୟୁ ହେଲେ ମୁଁ ଗୋଟିଏ ଦିବ୍ୟ ସୁନ୍ଦରୀକୁ ବିବାହ

କରିବି ବୋଲି ଇଚ୍ଛା ଅଛି ।' ଭକ୍ତଟି ଯୁକ୍ତି କଲା । ବିଷ୍ଣୁ ତା'ର ଯୁକ୍ତି ଶୁଣି ତୁରନ୍ତ ପ୍ରଥମ ବରଟି ପ୍ରଦାନ କଲେ । ପତ୍ନୀର ମୃତ୍ୟୁ ପରେ ଶବ ସତ୍କାର ଚାଲିଥିବା ସମୟରେ ସମବେତ ପରିବାର ଓ ପରିଜନ ଭକ୍ତଟିର ପତ୍ନୀର ଗୁଣ ଗାରିମା ବର୍ଣ୍ଣନା କରି କାନ୍ଦୁଥିବାର ଦେଖି ଭକ୍ତଟି ବିରାଟ ଭୁଲ୍‌ଟାଏ କରିଥିବାର ଅନୁଭବ କଲା । ତତ୍‌କ୍ଷଣାତ୍ ସେ ବିଷ୍ଣୁଙ୍କୁ ସ୍ମରଣ କରି ତା'ର ପତ୍ନୀଙ୍କୁ ପୁନଶ୍ଚ ଜୀବନ ଦାନ କରିବା ପାଇଁ ବର ମାଗିଲା । ସଙ୍ଗେ ସେଙ୍ଗେ ତା'ର ପତ୍ନୀ ଫେରିଆସିଲା ଘରକୁ । ଏଇଟି ଥିଲା ତା'ର ଦ୍ୱିତୀୟ ବର ତୃତୀୟ ଅର୍ଥାତ୍ ଶେଷ ବରଟି ପାଇବା ଲାଗି ସେ ତା'ର ମାନସିକ ପ୍ରସ୍ତୁତି କରୁଥାଏ । ଏହାକୁ ହାତଛଡ଼ା ନକରି କି ବର ମାଗିବ ସେଥିପାଇଁ ସେ ବନ୍ଧୁମାନଙ୍କ ସହ ଦିନରାତି ପରାମର୍ଶ କରୁଥାଏ । କେହି କେହି ତାକୁ ଧନ, ସ୍ୱାସ୍ଥ୍ୟ ଏବଂ ଅମର ବର ମାଗିବା ଲାଗି ମଧ୍ୟ ପରାମର୍ଶ ଦେଇଥାନ୍ତି । କିନ୍ତୁ କୌଣସି ନିଷ୍ପତ୍ତିରେ ସେ ପହଞ୍ଚି ନପାରି ସେ ପୁଣିଥରେ ଭଗବାନ ବିଷ୍ଣୁଙ୍କ ଉପଦେଶ ଲୋଡ଼ିଲା । ବିଷ୍ଣୁ ତା'ର ଦୋଦୁଲ୍ୟମାନ ଅବସ୍ଥା ବିଷୟରେ ଅବଗତ ହେବା ପରେ ସାମାନ୍ୟ ହସିଲେ ଏବଂ କହିଲେ : 'ବତ୍ସ, ଜୀବନରେ ଯାହା ପାଇଲେ ବି ସୁଖୀ ହେବାକୁ ଚେଷ୍ଟା କର । ତାହାହିଁ ଜୀବନର ଶ୍ରେଷ୍ଠ ତଥା ଶେଷ ସମ୍ପଦ ।'

ମଣିଷର ଚାହିଁବା ଗୋଟାଏ ଅନ୍ତହୀନ ପ୍ରକ୍ରିୟା । ସବୁ ଇଚ୍ଛାର ଶେଷ କେବଳ ମୃତ୍ୟୁରେ ଯେମିତି । ସେଇଥିପାଇଁ ହୁଏତ ବିଶିଷ୍ଟ ନାଟ୍ୟକାର ଜର୍ଜ ବର୍ଣ୍ଣାଡ ଶ' ତାଙ୍କ ରଚିତ ମ୍ୟାନ୍ ଏଣ୍ଡ୍ ସୁପରମ୍ୟାନ୍‌ରେ କହିଥିଲେ : ଜୀବନରେ ଦୁଇଟି ଦୁର୍ଦ୍ଦଶା ବରାବର ଥାଏ । ହୃଦୟ ନିଭୃତ ଇଚ୍ଛାଟି ହାସଲ ନକରିପାରିବାଟି ହେଉଛି ପ୍ରଥମ । ଅନ୍ୟଟି ହେଉଛି ସେ ଇଚ୍ଛା ପୂରଣ ହେବା ।' (There are two tragedies in life. One is not to get your hearts desire. The other is to get it.) ଏଥିରୁ ମନେ ହେଉଛି - ଦୁର୍ଦ୍ଦଶା ହିଁ ମଣିଷ ପାଇଁ ଗୋଟିଏ ଚରମ ସତ୍ୟ, ଅନ୍ୟ କିଛି ନୁହେଁ ।



# ମୁଁ

ସଦ୍ୟଜାତ ଶିଶୁଟିର କ୍ରନ୍ଦନ ଆମ ଭିତରୁ ଅନେକ ଶୁଣିଥିବେ । ଟିକିଏ ମନଯୋଗ ସହକାରେ ସେ କାନ୍ଦ ଶୁଣିଲେ ଜଣେ ଠଉରାଇବ ତା'ର ସେଇ ଭାଷା । ଅନେକ କୁହନ୍ତି ସେ କୁଆଁ କୁଆଁ ରାବ ଛାଡ଼େ । ବାସ୍ତବିକ୍ ସେ କ୍ରନ୍ଦନ ଭାଷା ହେଉଛି 'କୋଽହଂ' ଯାହାର ଭାବାର୍ଥ ହେଲା 'ମୁଁ କିଏ' । ଅବଶ୍ୟ ସେଇ ଜନ୍ମ ମୁହୂର୍ତ୍ତରୁ ଶେଷ ନିଃଶ୍ୱାସ ତ୍ୟାଗ କରିବା ଯାଏ ମଣିଷ ବାରମ୍ୱାର ସେଇ ଆଦିମ ପ୍ରଶ୍ନଟି ନିଜକୁ ନିଜ ଅଲକ୍ଷ୍ୟରେ ପଚାରି ଆସିଛି : ମୁଁ କିଏ ?

ଅବଶ୍ୟ ସେଇ ଅସମାହିତ ପ୍ରଶ୍ନ ପରବର୍ତ୍ତୀ ସମୟରେ ତା'ସାମ୍ନାରେ ପରିଚୟ-ସମସ୍ୟା (Identity Crisis)ଭାବେ ଠିଆ ହୋଇଛି । ଶୈଶବର 'ମୁଁ' ଧୀରେଧୀରେ ରୂପ ପରିବର୍ତ୍ତନ କରି ବୟସ୍କର 'ମୁଁ ହେଲା ବେଳକୁ ତାହାର ପରିଚୟ ହୁଏ 'ଅହଙ୍କାର' । ସବୁ ଘଟଣା ଅଥବା ଦୁର୍ଘଟଣାର କାରଣ ହୁଏ ଏଇ 'ମୁଁ' ।

ଇତିହାସରେ ଏଇ 'ମୁଁ'ର ଅନେକ ରୂପ ଆମ ସାମ୍ନାରେ ଆବିର୍ଭାବ ହୋଇଥାଏ । ଖ୍ରୀଷ୍ଟପୂର୍ବ ୪୭ ମସିହାରେ ଅମାନ୍ତିୟସ୍‌ଙ୍କୁ ଦେଇଥିବା ଚିଠିରେ ଜୁଲିଅସ୍ ସିଜର୍ ଖେଥିଲେ - ମୁଁ ଆସିଲି, ମୁଁ ଦେଖିଲି, ମୁଁ ଜିତିଲି (I came, I saw, I conquered) । ଠିକ୍ ସେଇପରି ଆଉ ଜଣେ ବିଶିଷ୍ଟ ଯୋଦ୍ଧା ମୃତ୍ୟୁ ପରେ ସାଧାରଣ ଜନତାକୁ କହିଥିଲେ - ମୁଁ ଆସିଥିଲି ଶୂନ୍ୟ ହାତରେ ଏବଂ ଯାଉଛି ମଧ୍ୟ ଶୂନ୍ୟ ହାତରେ । ନଦୀର ଜଳଧାରା ପରି କେଉଁଠି ଏଇ 'ମୁଁ' ଭୟଙ୍କର ତ ପୁଣି କେଉଁଠି କରୁଣା ଓ ଶାନ୍ତିର କପୋତଟି ଯେପରି ।

'ମୁଁ' ର ପାଚେରୀ ଭାଙ୍ଗିଗଲେ ଆରମ୍ଭ ହୁଏ ସୃଜନ ପ୍ରକ୍ରିୟା ଆରମ୍ଭ ହୁଏ କଳ୍ପନାର ରୋଷଣି । ସୃଜନଶୀଳତାର ଦୁଇଟି ରାସ୍ତା ଲମ୍ବି ଯାଇଛି : ବହିଃର୍ମୁଖୀ ଓ ଅନ୍ତଃର୍ମୁଖୀ । କିଛି ଉଦାହରଣ ଦିଆଯାଇପାରେ ଏଠି ଧରନ୍ତୁ, ରାମାୟଣ ବର୍ଣ୍ଣିତ ଅନେକ ଅଲୌକିକ ଘଟଣା ମଧ୍ୟରୁ ହନୁମାନଙ୍କର ଗନ୍ଧମାର୍ଦ୍ଦନ ପର୍ବତ ଟେକି କରି ଆଣିବା । ଲକ୍ଷ୍ମଣଙ୍କର ସୀତାଙ୍କୁ ତିନିଗୋଟି ଗାର ଡ଼େଇଁ ବାହାରକୁ ନଯିବା । ଅଥବା ଦେବର୍ଷି ନାରଦଙ୍କର ଗୋଟିଏ ମୁହୂର୍ତ୍ତରେ ହଜାର ହଜାର ମାଇଲ ଅଦୃଶ୍ୟ ରୂପରେ ଅତିକ୍ରମିବା । ସାଧାରଣ ଚିନ୍ତାରେ ଏ ସବୁ ଘଟିବା ହୁଏତ ସମ୍ଭବ ନୁହେଁ । ମାତ୍ର କଳ୍ପନାଟିକୁ ଟିକିଟଏ ଅନ୍ତଃର୍ମୁଖୀ କଲେ ଘଟଣାଟି ଆଉ ଏକ ରୂପ ନିଏ ।

ହନୁମାନଙ୍କ ଗନ୍ଧମାର୍ଦ୍ଦନ ପର୍ବତକୁ ଉଠାଇ ଆଣିବା ପରିକଳ୍ପନାକୁ ନେଇ ଜଣେ ଋଷିୟ ବୈଜ୍ଞାନିକଙ୍କ ଦ୍ୱାରା ଗବେଷଣା ଆରମ୍ଭ ହୋଇଯାଇଛି । ତାଙ୍କ ମତରେ, ଯଦି ସେ କୌଣସି

ଉପାୟରେ ମାଧ୍ୟାକର୍ଷଣ ଶକ୍ତିକୁ ଶୂନ୍ୟ କରି ଦିଅନ୍ତି ତେବେ ଭବିଷ୍ୟତରେ ପୃଥିବୀର ମାନଚିତ୍ରରେ ଅନେକ ପରିବର୍ତ୍ତନ ଛାଏଁ ଆସିଯିବ । କୌଣସି ରକେଟ୍ କିମ୍ବା ଉପଗ୍ରହକୁ ଅନ୍ୟ ଗ୍ରହକୁ ଛାଡ଼ିବା ଲାଗି ମଣିଷକୁ ଆଉ ଏତେ ଆୟସସାଧ୍ୟ ପ୍ରୟାସ କରିବାକୁ ପଡ଼ିବନି । ଠିକ୍ ସେଇପରି ଲକ୍ଷ୍ମଣରେଖା ସଂପର୍କରେ ଆମେରିକାର ଜଣେ ପ୍ରତିରକ୍ଷା ବିଶେଷଜ୍ଞ ଗବେଷଣା କରୁଛନ୍ତି । ଗବେଷଣାରେ ବିଷୟବସ୍ତୁ ହେଲା, ଲକ୍ଷ୍ମଣଙ୍କ ରେଖା ପରି ଯଦି ସେ ସମାନ୍ତରାଳ ଭାବେ ଏକଦିଗମୁଖୀ ଚୁମ୍ବକୀୟ କ୍ଷେତ୍ର (Unidirectional Magnetic field) ତିଆରି କରିପାରନ୍ତି, ତେବେ ଏହା ସୈନିକମାନଙ୍କ ପାଇଁ ମହାର୍ଘ ଦାନ ଭାବେ ପରିଗଣିତ ହେବ । ଏହାଫଳରେ ବାହାର ଦେଶର ସୈନିକ ନିଜ ଦେଶର ସୀମାତିକ୍ରମ କରିପାରିବେ ନାହିଁ । ଅଥଚ ନିଜ ଦେଶରୁ ଅକ୍ଳେଶରେ ରକେଟ୍ ଅଥବା ବୋମା ପ୍ରେରଣ କରିହେବ ଶତ୍ରୁ ପକ୍ଷ ବିରୁଦ୍ଧରେ ।

ଅନୁରୂପ ଭାବେ ନାରଦ ତତ୍ତ୍ୱକୁ ନେଇ ଏବେ ଜର୍ମାନୀ ବୈଜ୍ଞାନିକମାନେ ଗବେଷଣାରତ । ହଠାତ୍ ଶୂନ୍ୟ ପାଲଟି ଯିବା ଓ ମୁହୂର୍ତ୍ତକ ଭିତରେ ହଜାର ହଜାର ମାଇଲ୍ ଅତିକ୍ରମ କରିବାକୁ ଉକ୍ତ ବୈଜ୍ଞାନିକ ସୂକ୍ଷ୍ମ ଦୃଷ୍ଟିରେ ଚିନ୍ତା କରିଛନ୍ତି । ତାହା ହେଲା କୌଣସି ବସ୍ତୁକୁ ଅଣୁରେ ପରିଣତ କରିବା (ଅବଶ୍ୟ ଏହା ଆଂଶିକ ଭାବେ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ ଦ୍ୱାରା ପ୍ରମାଣିତ ହୋଇସାରିଛି ) ଏବଂ ଉକ୍ତ ଅଣୁ ଆଲୋକ ଗତିରେ ଚାଳିତ ହେବା । ଏହା ଫଳରେ ବିଶ୍ୱର କୌଣସି ସ୍ଥାନକୁ ମଣିଷ ଅକ୍ଳେଶରେ ମୁହୂର୍ତ୍ତକ ଭିତରେ ଯାଇପରିବ । ଏସବୁ କହିବା ଅର୍ଥ ସାଧାରଣ ବ୍ୟକ୍ତିଟିଏ ଗନ୍ଧମାର୍ଦ୍ଦନ ପର୍ବତ, ଲକ୍ଷ୍ମଣରେଖା ଓ ନାରଦଙ୍କ ଘଟଣାଟିକୁ ବାହାରୁ ଦେଖୁଥିବା ବେଳେ ଗୋଟିଏ ବୈଜ୍ଞାନିକ ତାକୁ ଏପରି ଦୃଷ୍ଟିରେ ଦେଖୁଛି - ଯାହା ମାନବ ସମାଜର ଉନ୍ନତିରେ ଦ୍ରୁତ ପରିବର୍ତ୍ତନ ଆଣିବାରେ ସହାୟକ ହେବ । ମଣିଷର ସୃଜନଶୀଳତା ହିଁ ଯେତେସବୁ ବୈଜ୍ଞାନିକ ଉଦ୍ଭାବନ ଓ ସମସ୍ୟା ସମାଧାନର ସୂତ୍ର ଯୋଗାଇଛି । ସୃଜନଶୀଳତାର ଆଉ ଏକ ବିଶିଷ୍ଟ ପ୍ରଭାବ ରହିଛି,. ଯାହାଫଳରେ ସାହିତ୍ୟ, ସଂଗୀତ ଓ ଚିତ୍ରକଳାର ଅଭିବୃଦ୍ଧି ପାଇଁ ଏହା ମୁଖ୍ୟତଃ ଦାୟୀ । ସମ୍ଭବତଃ ସେଇ କାରଣରୁ ଜର୍ମାନ ଦେଶର ସାହିତ୍ୟ, କଳା ଓ ସଂଗୀତ ବିଶ୍ୱର ଅନ୍ୟାନ୍ୟ ଦେଶଠାରୁ ବେଶ୍ ଉନ୍ନତ ଓ ନିଆରା । ପ୍ରତିଟି ଜର୍ମାନୀ ନାଗରିକ ନିଜକୁ ଜଣେ ସ୍ୱତନ୍ତ୍ର ଓ 'ଅନ୍ୟ କାହାରି ନକଲ ନୁହେଁ' ବୋଲି ଭାବେ । ପ୍ରତି ମଣିଷର ଯେମିତି ଚେହେରା, ସ୍ୱର, ଚାହାଁଣୀ ଓ ଚାଲି ଇତ୍ୟାଦିରେ ସ୍ୱାତ୍ୟନ୍ତତା ରହିଛି-ଜର୍ମାନୀ ବ୍ୟକ୍ତି ନିଜକୁ କିପରି ଅନ୍ୟଠାରୁ ନିଜକୁ ଅଲଗା ଦେଖାଇ ପାରିବ, ସେ ସଂପର୍କରେ ସତତ ଚେଷ୍ଟିତ ଥାଏ । ଅବଶ୍ୟ ତା'ର ମୁଁ ପଣିଆ ହିଁ ତାକୁ ଏ ସଂପର୍କରେ ଭାବିବାକୁ ଖୋରକ୍ ଯୋଗାଇଥାଏ । ପ୍ରତିଟି ମୁଁ ହିଁ ସ୍ୱତନ୍ତ୍ର ସୃଜନକ୍ଷମତାର ପ୍ରତିରୂପ ମାତ୍ର । ସେଇ ସୃଜନ କ୍ଷମତାର ଅଧିକାରୀ ହେବା ପାଇଁ ପ୍ରତ୍ୟେକଙ୍କୁ ସ୍ୱପ୍ନାରୋହୀ ହେବାକୁ ପଡ଼ିବ । ସ୍ୱପ୍ନ ନଥିଲେ କି ସୃଜନ ଆଉ ସୃଜନ, ନଥିଲେ କି ଜୀବନ ? ସମଗ୍ର ଜୀବନର ହିସାବ ନିକାଶ କଲାବେଳେ ତାକୁ ହିଁ ତ ବଜାର ଦର (Market Price) କୁହାଯାଇଥାଏ ।

ସେଇଥିପାଇଁ ତ ଏମିଲି ଡିକ୍‌ସନ୍ କହିଥିଲେ : ଜୀବନର କାଣିଚାଏ ଯେବେ ମୁଁ ନେଲି/ ପ୍ରତିଦାନେ, କହିବି ମୁଁ ଯାହା ସବୁ ଦେଲି/ ସଂକ୍ଷେପରେ, ବଞ୍ଚିବା ହିଁ ସାର/ସେମାନେ କହିଲେ, ଏହା ବଜାରର ଦର ।' (I took one draught of life/I'll tell you what I paid/ Precisely an existence-/ The market - price, they said) ଏ ସବୁ ଦରଦାମ୍ ନିର୍ଣ୍ଣୟ ହୋଇପାରିବ ଯଦି ଜଣେ ନିଜର ମୁଁ ଟିକୁ ସୁରକ୍ଷିତ ରଖିଥିବା ବେଳ ଯେପରି ଆଖର ନହୁଏ ସେଥିପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ହେବ । ପ୍ରସଙ୍ଗ କ୍ରମେ ମନେପଡୁଛି ଗପଟିଏ : ଗୋଟିଏ କପା ଗଛ ପାଖରେ ଅବିରତ ଚଢ଼େଇଟିଏ ବସିଥାଏ । ସାମ୍ନାରେ ଫଳଟିଏ ଝୁଲୁଥାଏ । ସବୁଦିନ ଚଢ଼େଇଟି ସେଇ ଫଳଟିକୁ ଦେଖୁଥାଏ ଏବଂ ଭାବୁଥାଏ ଫଳଟି ପାକଳ ହୋଇଗଲେ ସେ ତାକୁ ଖାଇବ । ହଠାତ୍ ଦିନେ ଫଳଟି ପାଚି ଗଲା ଏବଂ ଫାଟିଯାଇ ତା ଭିତରୁ ତୁଳା ଫିଟି ବାହାରେ ପବନରେ ଉଡ଼ି ବୁଲିଲା । ବିଚରା ଚଢେଇଟି ସେଇ ଦୃଶ୍ୟକୁ କେବଳ ବିକଳ ଭାବେ ଚାହିଁ ରହିଲା ।'

ସବୁ ମଣିଷର ସ୍ୱପ୍ନ ଅଛି । କିନ୍ତୁ ସେଇ ସ୍ୱପ୍ନକୁ ସାକାର କରିବା ପାଇଁ ପ୍ରତ୍ୟେକ ଆନ୍ତରିକତାର ସହ କଠିନ ପରିଶ୍ରମ ନକଲେ ସ୍ୱପ୍ନ କେବଳ ମରୀଚିକା ହୋଇ ରହିଯିବ ଏବଂ ମୃଗନାଭି କସ୍ତୁରୀ ଖୋଜିବା ଲାଗି ହନ୍ତସନ୍ତ ହେଉଥିବା ମୃଗ ପରି ମଣିଷଟି ଯାହା ଡହଳ ବିକଳ ହେଉଥିବ ।



# ପ୍ରିୟ ଗଣକ

ଫ୍ରାନସର ସମ୍ରାଟ ତ୍ରୟୋଦଶ ଲୁଇଙ୍କ ପାଖରେ ଜଣେ ଗଣକ ଥିଲେ । ଅର୍ଥ ଉପାର୍ଜନ ଉଦ୍ଦେଶ୍ୟରେ ସେ ଅନେକଗୁଡିଏ କୁକାର୍ଯ୍ୟରେ ଲିପ୍ତ ରହିବା ସହ ସମ୍ରାଟଙ୍କ ଉପରେ ବରାବର କର୍ତ୍ତୃତ୍ୱ ଜାହିର୍ ରଖିବାକୁ ସତତ ଚେଷ୍ଟିତ ଥିଲେ । ତାଙ୍କର ଏତାଦୃଶ କାର୍ଯ୍ୟକଳାପର ଏକ ଗୁପ୍ତ ବିବରଣୀ ପ୍ରସ୍ତୁତ କରି ତାଙ୍କୁ ମୃତ୍ୟୁଦଣ୍ଡ ଦେବା ପାଇଁ ସମ୍ରାଟଙ୍କୁ ସୁପାରିଶ କଲେ କାର୍ଡିନାଲ ରିଚେଲିଉ ।

ଗଣକଙ୍କ ସଂପର୍କୀୟ ଫାଇଲଟି ପଢ଼ିସାରି ସମ୍ରାଟ ତାଙ୍କୁ ଦରବାର ଚାଲିଥିବା ସମୟରେ ପ୍ରଶ୍ନ କଲେ : ମହାଶୟ ଆପଣ ଆମ ଦେଶ ଏବଂ ମୋ ସଂପର୍କରେ ଅନେକ ଭବିଷ୍ୟତବାଣୀ କରିଛନ୍ତି, ଯାହା ପରବର୍ତ୍ତୀ ସମୟରେ ସତ୍ୟ ବୋଲି ପ୍ରମାଣିତ ହେଇଛି । କିନ୍ତୁ ନିଜ ମୃତ୍ୟୁ ସଂପର୍କରେ ଭବିଷ୍ୟବାଣୀ ଶୁଣାଇ ନ ଥିଲେ କାହିଁକି ?

ସମ୍ରାଟଙ୍କ ପ୍ରଶ୍ନ ଶୁଣି ଗଣକଙ୍କ ଓଠରେ ସ୍ମିତ ହସ ଖେଳିଗଲା । ସେ କହିଲେ ମହାଭାଗ, ମୁଁ ମୋ'ର ମୃତ୍ୟୁ ସଂପର୍କୀୟ ଗଣନା ଅନେକ ଦିନ ତଳୁ କରିସାରିଛି ମାତ୍ର ଘଟଣାଟି ଅତ୍ୟନ୍ତ ମର୍ମନ୍ତୁଦ ଥିବାରୁ ସର୍ବସାଧାରଣରେ ଏଯାଏଁ ପ୍ରକାଶ କରି ନଥିଲି ଜାଣିଶୁଣି । ସମ୍ରାଟ ଏଥର ଗଣକର ଉତ୍ତରରେ ଭ୍ରୂକୁଞ୍ଚନ କରନ୍ତେ ଗଣକ କହିଲେ - ମହାଭାଗ,ମୋର ମୃତ୍ୟୁ ସମ୍ରାଟଙ୍କ ମୃତ୍ୟୁର ଠିକ୍ ସପ୍ତାହକ ପୂର୍ବରୁ ହେବ ବୋଲି ମୁଁ ଆଗରୁ ଗଣନା କରିସାରିଛି ।' ସାରା ଦରବାର ଗଣକଙ୍କର ଏଇ ବିବୃତିରେ ସ୍ତମ୍ଭୀଭୂତ ହେଇଗଲା ଯିମିତି ! ପରବର୍ତ୍ତୀ କାଳରେ ସମ୍ରାଟ କେବଳ ଗଣକଙ୍କୁ ଦୋଷମୁକ୍ତ କଲେ ନାହିଁ ବରଂ ସେଇ ଦିନଠୁ ଗଣକଙ୍କର ରାଜଉଆସରେ ରହିବାର ବ୍ୟବସ୍ଥା, ସୁରକ୍ଷା ପ୍ରଦାନ ସହ ଭୋଜନର ବ୍ୟବସ୍ଥା ମଧ୍ୟ କରାଇଲେ ।

ଅଧୁନାତନ ସମାଜରେ ବି ଏପରି ଗଣକଙ୍କର ସଂଖ୍ୟା କମ୍ ନାହିଁ । ବିଶେଷ କରି ଆମ ଦେଶରେ ଗାଁ ଗହଳିଠାରୁ ଆରମ୍ଭକରି ସହରର ଗଳିକନ୍ଦିରେ ଏମାନଙ୍କ ପ୍ରଭାବକୁ ଅସ୍ୱୀକାର କରାଯାଇ ନ ପାରେ । ଜନ୍ମ ସମୟରେ ଜାତକଠାରୁ ଆରମ୍ଭ କରି ବିବାହ ବ୍ରତ ତଥା ମୃତ୍ୟୁ ପରବର୍ତ୍ତୀ ସମସ୍ତ କାର୍ଯ୍ୟକ୍ରମ ପାଇଁ ଏଇ ଗଣକମାନଙ୍କ ଉପରେ ନିର୍ଭର କରିବାକୁ ହୁଏ ।

ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀର ମଧ୍ୟଭାଗରେ ଗଣନାବିଦ୍ୟା ବେବିଲୋନରୁ ଗ୍ରୀସକୁ ଆସିଥିଲା । ରୋମରେ ଏହା ପହଞ୍ଚିଥିଲା ଖ୍ରୀଷ୍ଟାବ୍ଦର ଅୟମାରମ୍ଭ ବେଳକୁ । ଭରତ ଓ ଚୀନରେ ଗଣନାବିଦ୍ୟା ଗ୍ରୀସ ତତ୍ତ୍ୱ ଉପରେ ପର୍ଯ୍ୟବସିତ ବୋଲି କୁହାଯାଇଥାଏ । ସାମାଜିକ ଜୀବନକୁ

ବାଦ୍ ଦେଲେ ଆମ ରାଜନୈତିକ ଜୀବନ ସହ ଏଇ ବିଦ୍ୟାର ପ୍ରୀତି କେତେ ଅଭେଦ୍ୟ ତାହା ମଧ୍ୟ ଆମର ଦୃଷ୍ଟି ଗୋଚର ହୁଏ ।

ସ୍ୱାଧୀନୋତ୍ତର ଭାରତର ପ୍ରଥମ ରାଷ୍ଟ୍ରପତି ବାବୁ ରାଜେନ୍ଦ୍ରପ୍ରସାଦ ପ୍ରଚଣ୍ଡ ଭାବେ ଗଣନା ବିଦ୍ୟା, ହସ୍ତରେଖା ପଠନ ଓ ଗୁଣିଗାରେଡି ଉପରେ ବିଶ୍ୱାସ ରଖୁଥିଲେ । ଚାଇନା ଆକ୍ରମଣ ସମୟର ଘଟଣା । ନେହେରୁଙ୍କ ପ୍ରଧାନମନ୍ତ୍ରିତ୍ୱ ନେଇ ଅନେକ ଗୁଜବ ଶୁଣାଯାଉଥାଏ । ଠିକ୍ ସେତିକିବେଳେ ଜଣେ ଗଣକଙ୍କର ଆବିର୍ଭାବ ହୁଏ ରାଜଧାନୀ ଦିଲ୍ଲୀରେ । ଭୂତପୂର୍ବ ଜଣେ ରାଜ୍ୟପାଳଙ୍କ ସହାୟତାରେ ସେ ରହୁଥାନ୍ତି ପଟିଆଲାର ମହାରାଜ ଯାଦବେନ୍ଦ୍ର ସିଂହଙ୍କ ଘରେ । ବାବୁ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ପଦ ଛାଡି ପ୍ରଧାନମନ୍ତ୍ରୀ ହେବେ ବୋଲି ଚାରିଆଡେ ପ୍ରଚାରିତ ହେଇସାରିଥାଏ । ଗୁଣିଗାରେଡିରେ ଓସ୍ତାଦ ଏଇ ବିହାରୀଙ୍କ କରିସ୍ମାରେ ମସ୍‌ଗୁଲ ଥାନ୍ତି ମହାରାଜା ଯାଦବେନ୍ଦ୍ର ସିଂ । ଗଣକଙ୍କ ଉତ୍ତର ଗୁଡିକ ପ୍ରାୟ ନେହେରୁଙ୍କ ଭବିଷ୍ୟତ ସଂପର୍କରେ ହିଁ ସୀମିତ ଥିଲା । ରାଜନୈତିକ ଅଭିସନ୍ଧି ରଖି ଉକ୍ତ ଗଣକଙ୍କ ବିଦ୍ୟା ତିନି ସେନାବାହିନୀର ମୁଖ୍ୟଙ୍କୁ ଦେଖାଇବା ଲାଗି ବ୍ୟବସ୍ଥା କରାଯାଇଥିଲା । ସୌଭାଗ୍ୟବଶତଃ, ତତ୍‌କାଳୀନ ଘରୋଇ ମନ୍ତ୍ରୀ ଲାଲ ବାହାଦୁର ଶାସ୍ତ୍ରୀଙ୍କ ଦୃଢ଼ ପଦକ୍ଷେପ ଯୋଗୁଁ, ଉକ୍ତ ଗଣକଙ୍କୁ ରାତାରାତି ଦିଲ୍ଲୀ ଛାଡି ପାଟନା ଅଭିମୁଖେ ଟ୍ରେନ ଧରବାକୁ ପଡିବା ସହ ଏକ ରାଜନୈତିକ ବିପର୍ଯ୍ୟୟରୁ ଦେଶକୁ ରକ୍ଷା କରାଯାଇ ପାରିଥିଲା । ଯଦିଓ ନେହେରୁ ଏପରି ଗଣକଙ୍କ ଠାରୁ ନିଜକୁ ନିରାପଦ ଦୂରତ୍ୱରେ ରଖିପାରୁ ଥିଲେ, ମାତ୍ର ସୁପୁତ୍ରୀ ଇନ୍ଦିରା ଗାନ୍ଧୀ ଏଇ ଗଣକ ସଂପ୍ରଦାୟଙ୍କ ଦ୍ୱାରା ଖୁବ୍‌ଶୀଘ୍ର ଆକ୍ରାନ୍ତ ହେଉଥିଲେ । ପଞ୍ଚ ଦଶକର ମଧ୍ୟଭାଗ ଘଟଣା । ଦିନେ ନେହେରୁ ଅପେକ୍ଷାକୃତ ଶୀଘ୍ର ଅଫିସ ଛାଡିଦେଲେ । ଘରକୁ ଫେରିବା ରାସ୍ତାରେ ମୌଲାନା ଆବୁଲ କାଲାମ ଆଜାଦ୍‌ଙ୍କ ଘରେ ଅଟକି ଗଲେ ସେ । ଅଗତ୍ୟା ସାଥିରେ ଆସିଥିବା ତାଙ୍କର ବ୍ୟକ୍ତିଗତ ସଚିବଙ୍କୁ ଘରେ ଛାଡିଦେଇ କାର୍‌ଟିକୁ ପଠାଇ ଦେବାକୁ ସଚିବଙ୍କୁ ନିର୍ଦ୍ଦେଶ ଦେଲେ । ମାତ୍ର ସଚିବଙ୍କୁ ନିଜ ଘର ସାମ୍ନାରେ ସେଦିନ ସନ୍ଧ୍ୟାରେ ଏକା ଦେଖି ଶ୍ରୀମତୀ ଗାନ୍ଧୀ ଆତଙ୍କିତ ହୋଇ ପଡିଲେ । କାରଣ, ଜଣେ ଗଣକଙ୍କ ଗଣାନାନୁଯାୟୀ ସେଦିନ ନେହେରୁଙ୍କର ଏକ ଗୋଡ ଅଚଳ ହୋଇଯିବ ବୋଲି ଶ୍ରୀମତୀ ଗାନ୍ଧୀ ଉକ୍ତ ସଚିବଙ୍କୁ କହିବାରୁ ବାଧ୍ୟହୋଇ ସଚିବ ମୌଲାନାଙ୍କ ଘରକୁ କାର ନେଇ ଲେଉଟି ଗଲେ । ଫେରିବା ସମୟରେ ସଚିବ ଶ୍ରୀମତୀ ଗାନ୍ଧୀଙ୍କ ସଂଶୟ ସଂପର୍କରେ ନେହେରୁଙ୍କୁ ଅବଗତ କରାନ୍ତେ, ଏ ସବୁରେ ବିଶ୍ୱାସ ରଖୁ ନଥିବା ନେହେରୁ ଚିଡିଉଠିବା ଥିଲା ସ୍ୱାଭାବିକ୍ ଘଟଣା । ମାତ୍ର ଗଣକଙ୍କ ଗଣନାନୁଯାୟୀ ସେଦିନ ସତକୁ ସତ ନେହେରୁଙ୍କ ଗୋଡଟି ଅଚଳ ହୋଇଯାଇଥିଲା କାର ଦୁର୍ଘଟଣାରେ ନୁହଁ, ହାର୍ଟ ଷ୍ଟ୍ରୋକ୍ ହେବା ଫଳରେ ।

ଗଣକମାନଙ୍କର ସହ ରାଜନୀତିଜ୍ଞମାନଙ୍କ ସଂପର୍କ ନେଇ ଲେଖିବା ଆରମ୍ଭ କଲେ ତାହା ଦୀର୍ଘ ସନ୍ଦର୍ଭ ହେବ । ଗଣନା ବିଦ୍ୟାର ସପକ୍ଷ ଓ ବିପକ୍ଷ ବାଦୀଙ୍କର ସଂଖ୍ୟା ମଧ୍ୟ ବହୁତ । ସିସେରୋ, ଲା'ଫୋଣ୍ଟେନ୍ ଓ ବ୍ରିଟିଶ ବ୍ୟଙ୍ଗକାର ଜୋନାଥନ୍ ସୁଇଫ୍ଟ ଏହାର ବିପକ୍ଷରେ ଥିଲେ । ଛତିଶ ବର୍ଷ ବୟସରେ ବାଇରନ ମରିବେ ବୋଲି ଥରେ ମିସେସ୍ ଉଇଲିୟମ୍ସ ନାମ୍ନୀ ଜଣେ ନାରୀ ଭବିଷ୍ୟତବାଣୀ ଶୁଣାଇଥିଲେ; ଯାହାପରେ ସତ ବୋଲି ପ୍ରମାଣିତ ହୋଇଥିଲା ।

ଆଉ ଥରେ ଜଣେ ମଧ୍ୟବୟସ୍କ ଭଦ୍ରବ୍ୟକ୍ତି ଖୁବ୍ ଚିନ୍ତିତ ଅବସ୍ଥାରେ ଜଣେ ଗଣକଙ୍କ ପାଖରେ ପହଞ୍ଚିଲେ । ତାଙ୍କ ଜନ୍ମ କୋଷ୍ଠି ଦେଖି ଗଣକ ଜଣକ କହିଲେ ଯେ ବ୍ୟକ୍ତିଙ୍କର ଆର୍ଥିକ ଚିନ୍ତା, ସ୍ୱାସ୍ଥ୍ୟ ଓ ପାରିବାରିକ ସମସ୍ୟା ରହିଚି ଏବଂ ଏହା ତାଙ୍କୁ ପଚାଶ ବର୍ଷ ହେବାଯାଏ ରହିବ । ଭଦ୍ରବ୍ୟକ୍ତିଙ୍କୁ ଯେତେବେଳେ ଅଣଚାଶ ବର୍ଷ ହୋଇଥିଲା, ସେ ଅତ୍ୟନ୍ତ ଉତ୍ସୁକତାର ସହ ପଚାରିଲେ : 'ତା' ପରେ କ'ଣ ହବ । ?''

ଗଣକ ଏଥର ଗମ୍ଭୀର ଭାବେ ଉତ୍ତର ହେଲେ : ''ତା'ପରେ ଆପଣ ଏ ସମସ୍ୟା ସହ ଅଭ୍ୟସ୍ତ ହେଇଯିବେ ଓ ଏହା ସମସ୍ୟା ଭାବେ ଆଉ ଦେଖାଦେବ ନାହିଁ ।''

ଗଣକ ବିଦ୍ୟା ସଂପର୍କରେ ଏହା ବୋଧହୁଏ ସର୍ବକାଳୀନ ସତ୍ୟ ।



# ବୀଜବପନ

ଆତ୍ମଜୀବନୀ ରଚନାରେ ପ୍ରଥମେ ସମ୍ଭବତଃ ଇଉରୋପୀୟ ସାହିତ୍ୟରେ ସେଣ୍ଟ ଅଗଷ୍ଟାଇନ୍ (୩୫୪-୪୩୦)ଙ୍କ ପୁସ୍ତକ 'ସ୍ୱୀକାରୋକ୍ତି' (confession)କୁ ମାନ୍ୟତା ଦିଆଯାଇଥାଏ । କ୍ୟାଥଲିକ୍ ଧର୍ମର ସତ୍ୟତା ଆବିଷ୍କାର ଦିଗରେ ତାଙ୍କର ଏଇ ଆତ୍ମଜୀବନୀ ବେଶ୍ ଲୋକପ୍ରିୟତା ତଥା ଗୁରୁତ୍ୱପୂର୍ଣ୍ଣ ଦଲିଲ୍ ଭାବେ ଗ୍ରହଣ କରାଯାଇଥାଏ । ପରେପରେ ଜନ୍ ବନିୟନ୍ଙ୍କ 'ଗ୍ରେସ୍ ଆବାଉଣ୍ଡି' (Grace Abounding)ଏବଂ ରୁଷୋଙ୍କ 'କନ୍‌ଫେସନ୍' ବେଶ୍ ଲେକପ୍ରିୟ ଆତ୍ମଜୀବନୀ ଭାବେ ପ୍ରସିଦ୍ଧ ଅର୍ଜନ କରିଛନ୍ତି । ମାତ୍ର ଜଣେ ନିର୍ଭୀକ ଆତ୍ମଜୀବନୀକାର ଭାବେ ଗ୍ରହଣ କରାଯାଏ ଇଟାଲୀର ଜିଓଭାନି ଜ୍ୟାକୋପୋ କ୍ୟାସାନୋଭାଙ୍କୁ । ମାତ୍ର ରୁଷୋଙ୍କ ପରି ପ୍ରଭାବ ବସ୍ତାର କରିବା ତାଙ୍କଦ୍ୱାରା ସମ୍ଭବ ନଥିଲା । ରୁଷୋଙ୍କ ପରେ ଔପନ୍ୟାସିକ ଆଲେକ୍‌ଜାଣ୍ଡାର ଡୁମାଙ୍କ ପେରି (PERE) କୁ ଗ୍ରହଣ କରାଯାଏ । ଠିକ୍ ସେଇ ସମୟରୁ ଆରମ୍ଭ ହୁଏ ଆତ୍ମଜୀବନୀ ଉପରେ ଆଧାତ୍ମିକ ଉପନ୍ୟାସ ରଚନାର ପରମ୍ପରା, ଯାହା ସାଂପ୍ରତିକ ଉପନ୍ୟାସ ରଚନାର ଏକ ଅବିଚ୍ଛେଦ୍ୟ ଅଙ୍ଗଭାବେ ପ୍ରଭାବ ଓ ମହିମା ବିସ୍ତାର କରିଛି କହିଲେ ଭୁଲ ହେବ ନାହିଁ ।

ଆତ୍ମଲିପି (Diary), ସ୍ମୃତିକଥା(Memoir) ଏବଂ ଆତ୍ମଜୀବନୀ (Autobiography) ଯଦିଓ ଗୋଟିଏ ସୂତ୍ରରେ ଆବଦ୍ଧ, ତଥାପି ସେମାନେ ନିଜନିଜ ଆସନରେ ବେଶ୍ ସଂଭ୍ରାନ୍ତ ଓ ସ୍ୱତନ୍ତ୍ର । ଏଇ ପରିପ୍ରେକ୍ଷୀରେ ମନକୁ ଆସେ ଓଡ଼ିଆ ସାହିତ୍ୟର ପ୍ରଥମ ଗାଳ୍ପିକ, ଔପନ୍ୟାସିକ ଓ ପ୍ରଥମ ଆତ୍ମଜୀବନୀକାର ଫକୀର ମୋହନଙ୍କ କଥା । ଶେଷ ନିଃଶ୍ୱାସ ତ୍ୟାଗ କରିବାର (୧୯୧୮) ବର୍ଷକ ପୂର୍ବରୁ ଫକୀର ମୋହନ ତାଙ୍କ ଆତ୍ମଜୀବନୀ ଶେଷ କରିଥିଲେ । କିଛି ବନ୍ଧୁ ଓ ଶୁଭେଚ୍ଛୁଙ୍କ ପ୍ରରୋଚନାରେ ସେ ଏଇ କାର୍ଯ୍ୟରେ ହାତ ଦେଇଥିଲେ ବୋଲି ଫକୀରମୋହନ ତାଙ୍କ ପୁସ୍ତକରେ ସୂଚନା ଦେଇଛନ୍ତି ଏବଂ ଅଦୂର ଭବିଷ୍ୟତରେ ଅନେକଗୁଡ଼ିଏ ଆତ୍ମଜୀବନୀ ଲେଖକ ଆମ ସାହିତ୍ୟ ଜଗତରେ ଆବିର୍ଭାବ ହେବେ ଏବଂ ସେଇମାନଙ୍କ ପାଇଁ ମୂଳଦୁଆ ପ୍ରସ୍ତୁତ କରୁଛନ୍ତି ବୋଲି ସେ କହିଛନ୍ତି । ବାସ୍ତବରେ ତାଙ୍କ ରଚିତ 'ଆତ୍ମଜୀବନ ଚରିତ'କୁ ଏକ ସର୍ବକାଳୀନ କ୍ଲାସିକ୍ ଭାବେ ମଧ୍ୟ ଆଜି ଗ୍ରହଣ କରାଯାଇପାରେ ।

ଫକୀରମୋହନଙ୍କ ମୃତ୍ୟୁର ନଅବର୍ଷ ପରେ ୧୯୨୭ ମସିହାରେ ଉତ୍କଳ ସାହିତ୍ୟ ଏବଂ ସତ୍ୟବାଦୀ ପତ୍ରିକାରେ ଯଦିଓ ଏହାର କିଛି ଅଂଶ ଛପାଯାଇଥିଲା, ମାତ୍ର ତାଙ୍କର ପୁତ୍ର ମୋହିନୀ ମୋହନ ସେନାପତି ଉକ୍ତ ପୁସ୍ତକକୁ ବିକୃତ, ସଂକ୍ଷିପ୍ତ ଓ ପରିବର୍ଜିତ କରି ଛପାଇବା ଦ୍ୱାରା

ସମାଲୋଚନାର ଶିକାର ହୋଇଥିଲେ । ଏହି ଘଟଣାର ୪୨ ବର୍ଷ ପରେ ଫକୀର ମୋହନଙ୍କ ଆତ୍ମଜୀବନୀ ପ୍ରକାଶ ପାଇଥିଲା ବିଶ୍ୱବିଦ୍ୟା (କଟକ) ପ୍ରକାଶନ ସଂସ୍ଥା ତରଫରୁ ଏପ୍ରିଲ ୧୯୬୯ ମସିହାରେ । ଅବଶ୍ୟ ଏହାର ମାତ୍ର ତିନିମାସ ପୂର୍ବରୁ ଅର୍ଥାତ୍ ୨୨.୧.୬୯ (ସରସ୍ୱତୀ ପୂଜା) ଦିନ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍ ପ୍ରକାଶନ ସଂସ୍ଥା ତରଫରୁ ଫକୀରମୋହନଙ୍କ ଲୋକପ୍ରିୟ ଉପନ୍ୟାସ ଛଅମାଣ ଆଠଗୁଣ୍ଠର ଇଂରାଜୀ ଅନୁବାଦ 'ଏ ପ୍ଲଟ୍ ଅଫ୍ ଲ୍ୟାଣ୍ଡ୍' ପ୍ରକାଶ କରିଥିଲେ ନୁରି ମିଶ୍ର । ନୁରି ମିଶ୍ର ହେଉଛନ୍ତି ତତ୍‌କାଳୀନ ବିଶିଷ୍ଟ ପ୍ରକାଶକ ଅନନ୍ତ ମିଶ୍ରଙ୍କ ପୁତ୍ର ଏବଂ ଫକୀରମୋହାନଙ୍କ ଏଇ କାଳଜୟୀ ଉପନ୍ୟାସକୁ ବୃହତ୍ତର ପାଠକ ଗୋଷ୍ଠୀ ପାଖରେ ପହଞ୍ଚାଇବା ଲାଗି ତାଙ୍କର ଉଦ୍ୟମ ପ୍ରଂଶସନୀୟ ନିଶ୍ଚୟ । ଅଷ୍ଟମ ଦଶକର ପ୍ରଥମ ଭାଗରେ ଓଡ଼ିଶା ସାହିତ୍ୟ ଏକାଡେମୀ ତରଫରୁ ବିଭିନ୍ନ କାଳଜୟୀ ସାହିତ୍ୟ କୃତିକୁ ଇଂରାଜୀ ଓ ହିନ୍ଦୀରେ ଅନୁବାଦ କରିବା ଲାଗି ଖସଡ଼ା ପ୍ରସ୍ତୁତ କରାଗଲା । ମାତ୍ର ଅର୍ଥଭାବ ଓ ଆବଶ୍ୟକୀୟ ଭିତ୍ତିଭୂମି ଅଭାବରୁ ଏହା କାର୍ଯ୍ୟକାରୀ ହୋଇପାରିଲା ନାହିଁ । ଅଥଚ ଲଣ୍ଡନସ୍ଥ ଓରିଏଣ୍ଟାଲ୍ ଆଣ୍ଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍ ତରଫରୁ ପ୍ରଫେସର୍ ଡଃ ଜନ୍ ଭିକ୍ଟର ବୋଲଟନ୍ ଫକୀରମୋହନଙ୍କ ଆତ୍ମଜୀବନ ଚରିତକୁ ଇଂରାଜୀରେ ଅନୁବାଦ କଲେ ଓ ଏହାକୁ ସାହିତ୍ୟ ଏକାଡେମୀ ୧୯୮୫ରେ 'ମାଇଁ ଟାଇମ୍‌ସ ଆଣ୍ଡ ଆଇ' ଶୀର୍ଷକରେ ଛାପିଲେ । ସମ୍ଭବତଃ ଫକୀରମୋହାନଙ୍କୁ ବିଶ୍ୱ ସାହିତ୍ୟ ଦରବାରରେ ପରିଚିତ କରାଇବାରେ ଅଗ୍ରଣୀ ଭୂମିକା ନେଇଛନ୍ତି ଡଃ ବୋଲଟନ୍ । ଫକୀରମୋହନଙ୍କ ଶହେଏକାବନତମ ଜନ୍ମବାର୍ଷିକୀରେ (୧୪.୧.୯୩) ଡଃ ବୋଲଟନ୍‌ଙ୍କ ଦ୍ୱାରା ଗବେଷଣା ପ୍ରସୂତ ପୁସ୍ତକ : 'ଫକୀରମୋହନ ସେନାପତି ହିଜ୍ ଲାଇଫ୍ ଏଣ୍ଡ୍ ପ୍ରୋଜ୍ ଫିକ୍‌ସନ୍' ପ୍ରକାଶ କରିଛନ୍ତି ଓଡ଼ିଶା ସାହିତ୍ୟ ଏକାଡେମୀ ।

ଏବେ ପୁନଶ୍ଚ ୧୯୯୭ରେ ସତୀର୍ଥ ପ୍ରକାଶନ ସଂସ୍ଥା ତରଫରୁ ଯତୀନ୍ଦ୍ର ନାୟକ ଏବଂ ପ୍ରଦୀପ୍ତ ଦାସଙ୍କ ଦ୍ୱାରା ଇଂରାଜୀରେ ଅନୁଦିତ ହୋଇ ପ୍ରକାଶ ପାଇଛି ଫକୀରମୋହନଙ୍କ ଆତ୍ମଜୀବନୀ ଚରିତ 'ଷ୍ଟୋରି ଅଫ୍ ମାଇଁ ଲାଇଫ୍' । ଏହି ଆତ୍ମଜୀବନୀ ଲେଖା ହେବାର ଅଶୀ ବର୍ଷ ପରେ ଏହା ଦୁଇଜଣ ଓଡ଼ିଆଙ୍କ ଦ୍ୱାରା ପ୍ରଥମ କରି ଅନୁଦିତ ହୋଇ ପ୍ରକାଶିତ ହୋଇଥିବାରୁ ଏ ଲେଖକ ଦୁଇ ଅନୁବାଦକଙ୍କୁ ଅଭିନନ୍ଦନ ଜଣାଉଛି । କାରଣ ଓଡ଼ିଶାରେ ଭାଷଣ ଅଧିକ ଓ କାମ କମ୍ ହୋଇଥାଏ । ଏହି ପୁସ୍ତକର ମୁଖବନ୍ଧ ଲେଖିଛନ୍ତିରେ' ମ୍ୟାକ୍ସେ (Ray Machay), ହଂକଂସ୍ଥିତ ବ୍ରିଟିଶ୍ କାଉନ୍‌ସିଲର ଇଂରାଜୀ ଭାଷା ବିଶାରଦ । ଏହାର ଉପକ୍ରମଣିକାରେ ପ୍ରଫେସର ଗଣେଶ୍ୱର ମିଶ୍ର ଫକୀରମୋହନଙ୍କ ଆତ୍ମଜୀବନୀର ପୁଙ୍ଖାନୁପୁଙ୍ଖ ଅଲୋଚନା କରିବା ସହ ଫକୀର ମୋହନଙ୍କ ଲେଖନୀ ଶୈଳୀ ଉପରେ ଗୁରୁତ୍ୱ ଆରୋପ କରିଛନ୍ତି ।

ଡଃ ବୋଲଟନ୍‌ଙ୍କ ଅନୁବାଦକୁ ପ୍ରଶଂସା କରିବା ସହ କୌଣସି ଏକ କ୍ଲାସିକ୍ ପୁସ୍ତକର ଏକାଧିକବାର ଅନୁବାଦ ସପକ୍ଷରେ ପ୍ରଫେସର୍ ମିଶ୍ର ଯୁକ୍ତି ମଧ୍ୟ କରିଛନ୍ତି ।

ଫକୀରମୋହନଙ୍କ ଆତ୍ମଜୀବନ ଚରିତ ସହ ଡଃ ବୋଲଟନ୍ ଓ ଯତୀନ୍ଦ୍ର କେ. ନାୟକ ଏବଂ ପ୍ରଦୀପ୍ତ ଦାସଙ୍କ ଅନୁଦିତ ପୁସ୍ତକ ଦୁଇଟି ମିଳାଇ ପଢ଼ିଲେ ଅନୁବାଦର ମଜା ବେଶ୍ ନେଇହେବ । ତାହାହିଁ ଏବେ ଏ ଲେଖକ କରୁଛି ଏବଂ ଆଶା କରୁଛି ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ସାମାନ୍ୟ ଶ୍ରଦ୍ଧା ତଥା ସ୍ୱାଭିମାନ ରଖୁଥିବା ପାଠକେ ଶ୍ରୀ ନାୟକ ଓ ଶ୍ରୀଦାସଙ୍କ ବହିଟିକୁ ପଢ଼ିବା ପାଇଁ ଆଗ୍ରହ ପ୍ରକାଶ କରିବେ । ଭୁଲିଯିବା ଉଚିତ୍ ନୁହେଁ ଯେ ଓଡ଼ିଆ କଥା ସାହିତ୍ୟର ଯେଉଁ ଶାଖା ପ୍ରଶାଖା ଏବେ ମେଲିଛି ତା'ର ମଞ୍ଜି ଫକୀରମୋହନ ହିଁ ପୋତିଥିଲେ ପ୍ରଥମେ ।



# ଅନନ୍ତର ମୃତ୍ୟୁ

ଏକଦା ବିଶିଷ୍ଟ ଦାର୍ଶନିକ ସକ୍ରେଟିସ୍ କହିଥିଲେ : ଖାଦ୍ୟର ଅସଲ ଚଟଣୀ ହେଉଛି କ୍ଷୁଧା । (The best sauce for food is hunger) । କୌଣସି ଚଟଣି ଥିଲେ ଖାଦ୍ୟ ଯେମିତି ଅଧିକ ଭଲ ଲାଗେ, ଭୋକ ଥିଲେ ଠିକ୍ ସେଇପରି ଖାଦ୍ୟର ମଜ୍ଜା ନେଇହୁଏ । କିନ୍ତୁ ବିଶିଷ୍ଟ ଔପନ୍ୟାସିକ ଜନ୍ ଷ୍ଟେନ୍‌ବେକ୍ ତାଙ୍କର 'ଦି ଗ୍ରେପ୍‌ସ ଅଫ ର୍‌ୟାଥ' (The Grapes of wrath) ବହିରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ଯେ, କ୍ଷୁଧା ଓ କ୍ରୋଧ ଭିତରେ ଥିବା ଗାରଟି ଖୁବ୍ ପତଳା (...the line between hunger and anger is a thin line) । ଏ କଥାର ଉଦାହରଣ ବି ଆମ ସାହିତ୍ୟ ଓ ଲୋକ କଥାରେ କମ୍ ନାହିଁ । ବୁଭୁକ୍ଷୁମାନେ କି ପାପ କରିପାରନ୍ତି ସେ କଥା ଆମମାନଙ୍କୁ ଗଙ୍ଗଦତ୍ତ ମଣ୍ଡୁକ ଟି ବାରମ୍ବାର ମନେ ପକେଇଦିଏ ।

ଏବେ ସେଇ କ୍ଷୁଧା ଆଉ କ୍ରୋଧର କାହାଣୀର ପୁନରାବୃତ୍ତି ହେଇଚି ଓଡ଼ିଶାର ସର୍ବପ୍ରଥମ ଚିଡ଼ିଆଖାନା ନନ୍ଦନକାନନରେ । ଚଳିତବର୍ଷ ଜୁନ୍ ଷୋହଳ ତାରିଖରେ ଲଛମନ ନାମକ ବାଘଟିକୁ ଆହର ଦେବାକୁଯାଇ ଜଣେ କର୍ମଚାରୀ ଅନନ୍ତ ନାଏକ ଉକ୍ତ ବାଘର ଆହାର ହୋଇଯିବା ଖବର ଖବରକାଗଜମାନଙ୍କରେ ପ୍ରକାଶିତ ହୋଇଛି ।

ଯଦିଓ ଅନନ୍ତର ମୃତ୍ୟୁରେ କୌଣସି ଶୋକସଭା ହୋଇନାହିଁ, ମାତ୍ର କର୍ତ୍ତୃପକ୍ଷ ତା'ର ପରିବାରକୁ ଦଶହଜାର ଟଙ୍କା ଦେଇ ଗୋଟିଏ ମହତ୍ କାର୍ଯ୍ୟ କରିଥିବାର ଡିଣ୍ଡିମ ପିଟିଛନ୍ତି । ଅନନ୍ତର ମୃତ୍ୟୁରେ ଶୋକସଭା ଏଇଥିପାଇଁ ହୋଇ ନଥିଲା କାରଣ ସେ ପାକିସ୍ତାନ ଅଧିକୃତ କାରଗିଲ କ୍ଷେତ୍ରରେ ଲଢେଇ କରି ଶହୀଦ ହୋଇ ନଥିଲା । ତେଣୁ ତା'ର ଶବାଧାରରେ କୌଣସି ରାଜନୈତିକ ଦଳର ମୁଖପାତ୍ର ଅଥବା ବରିଷ୍ଠ ନେତା, ସ୍ଥାନୀୟ ପ୍ରଶାସନିକ ଅଧିକାରୀ ଯୋଗଦେବାର ଆବଶ୍ୟକତା ନ ଥିଲା । ଏହାର କାରଣ ମଧ୍ୟ ଖୁବ୍ ସହଜ । ଅନନ୍ତ ନିଜ ପାଇଁ ତଥା ନିଜର ଅସାବଧାନତା ପାଇଁ ମୃତ୍ୟୁକୁ ଆମନ୍ତ୍ରଣ କରିଥିଲା ।

ଅଥଚ ଚାରିବର୍ଷ ତଳେ (ଅକ୍ଟୋବର ୬ ତାରିଖ ୧୯୯୫) ଏହି ଅନନ୍ତ ନାମକ ଯୁବକଟି ଜଣେ ବାହାଦୁରର ଶିରିପା ପିନ୍ଧିଥିଲା ସେହି ନନ୍ଦନକାନନରେ । ଯେତେବେଳେ 'ରାଜା' ନାମକ ଏକ ହିଂସ୍ର ବାଘ କବଳରୁ ତା'ର ସହକର୍ମୀ ଗୁଣ୍ଡିଚା ନାଏକଙ୍କୁ ସେ ଛଡାଇ ଆଣିପାରିଥିଲା । ସାହସିକତାର ପୁରସ୍କାର ପାଇଥିଲା ସେ । ମାତ୍ର ସେ ସବୁ ଚାରିବର୍ଷ ତଳର ଘଟଣା ।

ନନ୍ଦନକାନନରେ ବାଘ କିମ୍ବା ହାତୀ ଆକ୍ରମଣରେ ପ୍ରାଣବଳି ଦେବା କିଛି ନୂଆ ଘଟଣା ନୁହେଁ । ଦୁଇବର୍ଷ ତଳେ 'ନନ୍ଦ' ନାମକ ଦନ୍ତାହାତୀର ଆକ୍ରମଣରେ ମାହୁନ୍ତ ରାଧାରଞ୍ଜନର

ମଧ୍ୟ ମୃତ୍ୟୁ ହୋଇଥିଲା । ଆହୁରି ଅନେକ ଘଟଣା ମଧ ଘଟୁଛି ଯାହା ପ୍ରକାଶ ହେଉନାହିଁ । ଗୋଟିଏ କଥା ବାରମ୍ବାର କୁହାଯାଉଛି ଯେ, ସେଠାରେ ଥିବା ପଶୁପକ୍ଷୀଙ୍କ ପ୍ରତି ଖାଦ୍ୟ ଓ ଅନ୍ୟାନ୍ୟ ସୁବିଧା ସୁଯୋଗରେ ଅନେକ ତ୍ରୁଟି ରହୁଛି । ଆଶ୍ୱାସନାର ବିଷୟ ଯେ ଏଇ ପଶୁପକ୍ଷୀ ମାନଙ୍କର ଯଦି ସାମର୍ଥ୍ୟ କିମ୍ବା ମଣିଷ ପରି ଭାବପ୍ରକାଶ କରିବା ଶକ୍ତି ଥାନ୍ତା ତେବେ ସେମାନେ କେବେଠାରୁ ତାଙ୍କର ଦାବି ପୂରଣ ପାଇଁ ଏକ ସଂଗଠନ ପଞ୍ଜୀକୃତ କରି ସାରନ୍ତେଣି । ଦୁଃଖଦ କଥା ହେଉଛି ସେମାନଙ୍କ କ୍ରୋଧର ଶିକାର ହେଉଛନ୍ତି ନିରୀହ ଅନନ୍ତମାନେ, ବରିଷ୍ଠ ଅଧିକାରୀ ନୁହନ୍ତି ।

ନନ୍ଦନକାନନ ହେଉଛି ସ୍ୱର୍ଗର ଅନ୍ୟନାମ; ଯେଉଁଠି କ୍ରୋଧ, ଘୃଣା, ଈର୍ଷା, ଅସୂୟା ଅଥବା ଦ୍ୱେଷର ସ୍ଥାନ ନାହିଁ । କିନ୍ତୁଆମ ନନ୍ଦନକାନନରେ ଏସବୁ କାହିଁକି ଏତେ ପରିମାଣରେ ଏବେ ? ବିଶ୍ୱର ଏକଦା ସର୍ବପ୍ରଥମ ମାନ୍ୟତାପାପ୍ତ ଧଳାବାଘ ସଫାରି କିମ୍ବା ଘଡିଆଳ କୁମ୍ଭୀର ପ୍ରଜନନ କେନ୍ଦ୍ର ଭାବେ ଏଇ ଅନୁଷ୍ଠାନଟି ପାଇଥିଲା ସ୍ୱୀକୃତି । ଏବେ କିନ୍ତୁ ଗୋଟିଏ ନର୍କରେ ପରିଣତ ହେଇଛି ଏଇ ସଂସ୍ଥା । ଏଠାରେ ବନ୍ଦୀ ଜୀବନଯାପନ କରୁଥିବା ପଶୁ ଓ ପକ୍ଷୀଙ୍କ ପ୍ରତି ତାଚ୍ଛଲ୍ୟ ପ୍ରଦର୍ଶନ କରାଯାଉଛି । ବରିଷ୍ଠ ଅଧିକାରୀଙ୍କ ବ୍ୟକ୍ତିଗତ କାମରେ ନିଯୁକ୍ତ କର୍ମଚାରୀମାନଙ୍କୁ ବ୍ୟବହାର କରାଯାଉଛି, ଅନ୍ତତଃ ଏହା ହିଁ ଅନ୍ୟତମ କାରଣ ହେଉଛି ଅନନ୍ତର ମୃତ୍ୟୁ ପାଇଁ । ନିୟୋଜିତ ପାଞ୍ଚଜଣ କର୍ମଚାରୀଙ୍କ ମଧ୍ୟରୁ ଉକ୍ତ ଦିନ ତିନିଜଣ କର୍ମଚାରୀ ଜଣେ ଅଧିକାରୀଙ୍କ କନ୍ୟାର ବିବାହୋତ୍ସବରେ ବାଜା ବଜାଇବା ପାଇଁ କୁଆଡେ ଯାଇଥିଲେ ବୋଲି ଖବର ବି ପ୍ରକାଶିତ ହୋଇଛି ସମ୍ବାଦପତ୍ରରେ । ଖୋଦ ରାଜଧାନୀର ଉପକଣ୍ଠରେ ଏ ଘଟଣା ଘଟିଥିଲେ ବି ଆମର ବିଧାନସଭାର ମାନ୍ୟବର ସଦସ୍ୟମାନେ ଏଥିରେ ମୁଣ୍ଡ ଖେଳାଇବାକୁ ସମୟ ପାଇନାହାନ୍ତି ।

ଗତବର୍ଷ ବିଶାଖାପାଟଣା ସହର ଉପକଣ୍ଠରେ ଥିବା ଇନ୍ଦିରା ଗାନ୍ଧୀ ପ୍ରାକୃତିକ ପ୍ରାଣୀ ଉଦ୍ୟାନ ଦେଖିବାର ସୁଯୋଗ ଏ ଲେଖକକୁ ମିଳିଥିଲା । ସେଠାରେ ପଶୁମାନଙ୍କୁ ପ୍ରାକୃତିକ ଉପାୟରେ ବିନା ତାରବାଡରେ ରଖିବାର ବ୍ୟବସ୍ଥା କରାଯାଇଛି । ଏବେ ଅନନ୍ତର ମୃତ୍ୟୁରୁ ଗୋଟିଏ ଶିକ୍ଷା ଅନ୍ତତଃ ଆମକୁ ମିଳିଛି । ବନ୍ୟପ୍ରାଣୀ ପ୍ରତିଶୋଧ ନେବାରେ ଆଦୌ କାର୍ପଣ୍ୟ କରେ ନାହିଁ, କିନ୍ତୁ ମଣିଷ ସେହି ବନ୍ୟପ୍ରାଣୀଠୁ ଅନେକ ଗୁଣରେ ହିଂସ୍ର ଏବଂ ନିଷ୍ଠୁର । ପୁନଶ୍ଚ ଲୁସାକାର ଚିଡିଆଖାନାଟିର ଉଦାହରଣ ଏଠି ନିଆଯାଇପାରେ । ଠାଏ ଗୋଟିଏ ତାରବାଡ ଘେରା ବୃହତ୍ ପିଞ୍ଜରା ପାଖରେ ଫଳକଟିଏ ଝୁଲୁଛି : ସାବଧାନ ଯେ ହେଉଛି ବିଶ୍ୱର ସବୁଠୁ ହିଂସ୍ର ପ୍ରାଣୀ' ଦର୍ଶକ ସେଇ ପିଞ୍ଜରା ପାଖରେ ଠିଆହୋଇ କୌଣସି ପଶୁକୁ ଦେଖିପାରେ ନାହିଁ । ବରଂ ସେଠାରେ ରଖାଯାଇଥିବା ଦର୍ପଣରେ ନିଜ ମୁହଁର ପ୍ରତିଫଳନ ହିଁ ଦେଖେ । ଆଜି ଅନନ୍ତର ମୃତ୍ୟୁ ସେହି କଥାଟି ଆମକୁ ବାରମ୍ବାର ମନେ ପକେଇ ଦେଉଛି



# ଗୋଟିଏ ବିତର୍କିତ ସକାଳ

**ସେ**ଦିନ ସମ୍ଭବତଃ ଥିଲା ରବିବାର । ଛୁଟିଦିନ । ଦିନଟି କିପରି କଟିବ ସେ ନେଇ ଖସଡା ପ୍ରସ୍ତୁତ କରୁଥିବା ସମୟରେ ଜଣେ ବନ୍ଧୁ ଆସି ପହଞ୍ଚିଲେ । ଗୋଟିଏ ସଭାରେ ଯୋଗଦେବା ଲାଗି ଆମନ୍ତ୍ରଣ ପାଇଥାନ୍ତି ସେ ।ଆଗରୁ ଏ ଲେଖକ ବି ଉକ୍ତ ସଭାରେ ଉପସ୍ଥିତ ରହିବାକୁ ଆୟୋଜକ ବନ୍ଧୁଙ୍କଠାରୁ ଅନୁରୋଧ ପାଇଥିଲା । ତେଣୁ ଦୁହେଁ ସେଇ ସଭାଟିକୁ ଉପଭୋଗ କରିବା ଲାଗି ପ୍ରସ୍ତୁତ ହେଲୁ ।

ସକାଳ ନ'ଟାରେସଭା କାର୍ଯ୍ୟ ଆରମ୍ଭ ହେଲା । ସଭା କକ୍ଷରେ ଅନେକ ପରିଚିତ ଓ ଅପରିଚିତ ବ୍ୟକ୍ତିଙ୍କର ସମାବେଶ । ସେଥିରେ ଥାନ୍ତି ଅଧ୍ୟାପକ, ରାଜନୈତିକ ନେତୃବର୍ଗ ଓ ବେସରକାରୀ ସଂସ୍ଥାର କର୍ମକର୍ତ୍ତାଗଣ ଏବଂ କିଛି ସରକାରୀ ପଦସ୍ଥ କର୍ମଚାରୀ । ଆଲୋଚନାର ମୁଖ୍ୟ ବିଷୟବସ୍ତୁ ଥିଲା "ଶିକ୍ଷାୟନ ଅର୍ଥନୈତିକ ବିକାଶର ପରିପନ୍ଥୀ କାହିଁକି ?" ଆଲୋଚନା ଚାଲିଥିବା ସହରଟିର ଚାରିପଟେ କିଛି କିଛି ଶିକ୍ଷାନୁଷ୍ଠାନ ଗଢ଼ି ଉଠିବାର ଉଦ୍‌ଘୋଷଣା ସରକାରଙ୍କ ପକ୍ଷରୁ ହୋଇସାରିଥିଲା । ଏଇ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ଯୋଗୁଁ ସ୍ଥାନୀୟ ଲୋକଙ୍କର କି କି ଅସୁବିଧା ହେବ, ପାରିପାର୍ଶ୍ୱିକ ଅର୍ଥନୈତିକ ତଥା ସାମାଜିକ ବ୍ୟବସ୍ଥାରେ ଏହାର କି ପ୍ରକାର ପ୍ରଭାବ ପଡିବ, ତାହାହିଁ ସେଦି ଆଲୋଚନା ହେବ ବୋଲି ସ୍ଥିର ହୋଇଥିଲା । ହୁଏତ, ଉକ୍ତ ମାନସମନ୍ଥନରୁ ଶିକ୍ଷ ପ୍ରତିଷ୍ଠା ସହ ସରକାର କି ପ୍ରକାର ଆନୁଷଙ୍ଗିକ ପଦକ୍ଷେପମାନ ନେବେ ତାହା ହିଁ ଏଇ ଆଲୋଚକମାନେ ଅଥବା ଉଦ୍ୟୋକ୍ତାମାନେ ସରକାରଙ୍କୁ ପ୍ରସ୍ତାବ ଦେବେ - ଏଇ ଲୋଭରେ ଏ ଲେଖକ ସେଇ ସଭାକୁ ଯାଇଥିଲା ।

କିନ୍ତୁ ଫଳ ଫଳିଲା ଓଲଟା । ସଭା କାର୍ଯ୍ୟ ଆରମ୍ଭରୁ ଗୋଟିଏ ଶିକ୍ଷାନୁଷ୍ଠାନର ଜଣେ ବରିଷ୍ଠ ଅଧିକାରୀ ତାଙ୍କ ଶିକ୍ଷରେ ପ୍ରଦୂଷଣ ରୋକିବା ନେଇ ହୋଇଥିବା କାର୍ଯ୍ୟକ୍ରମ ସମ୍ପର୍କରେ ଏକ ତାତ୍ତ୍ୱିକ ବିଶ୍ଳେଷଣ ଦେଉଥିବା ସମୟରେ ଜଣେ ବରିଷ୍ଠ ରାଜନୈତିକ ବ୍ୟକ୍ତି ତାଙ୍କୁ ପ୍ରବଳ ବିରୋଧ କରିବା ଆରମ୍ଭ କଲେ । ଧୀରେ ଧୀରେ ଆଲୋଚନା ଉକ୍ତ ଶିକ୍ଷାନୁଷ୍ଠାନକୁ ନେଇ କେନ୍ଦ୍ରୀଭୂତ ହେଲା ଏବଂ ନିଜକୁ ବୁଦ୍ଧିଜୀବୀ ବୋଲି ସଂବୋଧନ କରୁଥିବା କେତେକ ବ୍ୟକ୍ତି (ଯଦିଓ ସେମାନେ ପ୍ରକାରାନ୍ତରେ ଥିଲେ 'ବୃତ୍ତିଜୀବୀ') ଗୋଟିଏ ଶିକ୍ଷାନୁଷ୍ଠାନର ଶରୀରକୁ ଅଭିଜ୍ଞ ଡାକ୍ତର ପରି ଅସ୍ତ୍ରପ୍ରଚାର କରିବା ଆରମ୍ଭ କରିଦେଲେ । ଫଳତଃ, ସଭାରେ ପୂର୍ବରୁ ନିର୍ଦ୍ଧାରିତ ହୋଇଥିବା ବିଷୟବସ୍ତୁନେଇ ଅଲୋଚନା ହେବାର ସୁଯୋଗଟି ହିଁନ ଥିଲା । ତାତ୍ତ୍ୱିକ ଅଲୋଚନା ଚକ୍ରଟି ଯେପରି ଦୁଇ ପରସ୍ପର ବିରେଧୀ ମତର ଗୋଟାଏ କୁରୁକ୍ଷେତ୍ର ପାଲଟିଗଲା

କିଛିକ୍ଷଣ ପାଇଁ । ଅଗତ୍ୟା, ଆଲୋଚନାଚକ୍ର ଶେଷ ହେବା ପୂର୍ବରୁ ଆମେ ଦୁଇବନ୍ଧୁ ସଭାସ୍ଥଳ ପରିତ୍ୟାଗ କରିବା ଲାଗି ନିଷ୍ପତ୍ତି ନେଲୁ ।

ଏଇ ଆଲୋଚନାଚକ୍ର ସମାପ୍ତ ହେବାର କିଛିଦିନ ପରେ ସମ୍ବାଦପତ୍ରମାନଙ୍କ ପୃଷ୍ଠା ମଣ୍ଡନ କରି ଉକ୍ତ ଆଲୋଚନାର ବିବରଣୀମାନେ ପ୍ରକାଶିତ ହେଲା । ଆମ ଦେଶରେ, ସାଧାରଣତଃ କୌଣସି ବୌଦ୍ଧିକ ଆନ୍ଦୋଳନର ପରିସମାପ୍ତି ଘଟେ ଖବର କାଗଜରେ ସେ ସମ୍ପର୍କୀୟ ଖବର ପ୍ରକାଶିତ ହେବା ପରେ । ଖବର କାଗଜ ପୃଷ୍ଠାରେ ନିଜନାମ ଦେଖି ବୁଦ୍ଧିଜୀବୀ ଏବଂ ବୃତ୍ତିଜୀବୀଙ୍କ ଧାରଣା ହୁଏ ଯେ, ତାଙ୍କ ସ୍ୱପ୍ନ ସାର୍ଥକ ହେଇଛି । କିନ୍ତୁ ପ୍ରକୃତରେ ତାହା ହିଁ ହୋଇ ନଥାଏ ଆଦୌ । ସ୍ୱପ୍ନର ବୀଜଟି ଅଙ୍କୁରୋଦ୍‌ଗମ ହେବା ପୂର୍ବରୁ ନଷ୍ଟ ହୋଇଯାଇଥାଏ ।

ସେମାନେ ଆଉ କାହାକୁ ଠକିବାକୁ ଚେଷ୍ଟାକରି ନିଜକୁ ହିଁ ଠକି ଚାଲିଥାନ୍ତି । ତାହା ହିଁ ଘଟିଥାଏ ସବୁବେଳେ । ଥରେ ଜଣେ ରାଜା ନିଜର ବୃଦ୍ଧାବସ୍ଥାରେ ଭାବିଲେ ତାଙ୍କର ମୃତ୍ୟୁ ସମୟ ପାଖେଇ ଆସିଲାଣି । ନିଜର ଏକମାତ୍ର ପୁତ୍ର କିପରି ସୁଚାରୁରୂପେ ରାଜକାର୍ଯ୍ୟ ତୁଲାଇ ପାରିବ ସେ ନେଇ ସେ ଚିନ୍ତିତ ହୋଇପଡିଲେ । ସ୍ଥିର କଲେ ଗୋଟିଏ ସଚ୍ଚୋଟ ମନ୍ତ୍ରୀ ରାଜପୁତ୍ରଙ୍କ ପାଇଁ ଯୋଗାଡ କରିବାକୁ ପଡିବ । ଅଗତ୍ୟା, ରାଜା ଦେଶର ବଛା ବଛା ବୁଦ୍ଧିଜୀବୀଙ୍କୁ ନେଇ ଏକ ସଭାର ଆୟୋଜନ କଲେ । : ''ଗତବର୍ଷ ମୁଁ କିଛି ଭୁଲ କାମ କରିଥିଲି କି ?'' ରାଜା ସମବେତ ବୁଦ୍ଧିଜୀବୀଙ୍କୁ ପ୍ରଶ୍ନ କଲେ ।

: ''ହଜୁର ଧର୍ମାବତାର ! ଈଶ୍ୱର ସଦୃଶ !! ସେ କ'ଣ କେବେ ଭୁଲ କରିପାରନ୍ତି ?'' କହିଲେ ପ୍ରାୟତଃ ଉପସ୍ଥିତ ସମସ୍ତ ବୁଦ୍ଧିଜୀବୀ । ରାଜା ଖୁସିହେଲେ ସେମାନଙ୍କ ଉତ୍ତରରେ । ସମସ୍ତ ବୁଦ୍ଧିଜୀବୀଙ୍କୁ ପୁରସ୍କାର ସ୍ୱରୂପ ମିଳିଲା ଗୋଟିଏ ଲେଖାଏଁ ମୁକ୍ତାମାଳ । ଆନନ୍ଦରେ ମୁକ୍ତାମାଳ ନେଇ ବୁଦ୍ଧିଜୀବୀଗଣ ନିଜ ନିଜ ଘରକୁ ପ୍ରତ୍ୟାବର୍ତ୍ତନ କଲେ ।

କିଛି ସମୟ ଉତ୍ତାରୁ ଦେଖାଗଲା ଜଣେ ମାତ୍ର ବ୍ୟକ୍ତି ସଭାସ୍ଥଳରେ ଚୁପ୍‌ଚାପ୍ ବସିଛି । ଖବର ନେଇ ରାଜା ଜାଣିଲେ କି ବ୍ୟକ୍ତିଟି ରାଜାଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଚାହୁଁଛି ।

: ''କି ଉତ୍ତର ଦବ ତମେ ?'' ରାଜା ପ୍ରଶ୍ନ କଲେ ସେଇ ଅଜଣା ବ୍ୟକ୍ତିଟିକୁ ।

ଲୋକଟି ରାଜାଙ୍କ ଆଖିରେ ଆଖି ମିଳେଇ ଏଥର କହିବାକୁ ଲାଗିଲା, ''ହଜୁର ଧର୍ମାବତାର ! ମାତ୍ର ସେ ଜଣେ ସାଧାରଣ ମଣିଷ ପରି । ଆଉ ମଣିଷ ମାତ୍ରେ ହିଁ ଭୁଲ କରନ୍ତି । ହଜୁର ସେଥିରୁ ବାଦ ଯିବେ କିପରି ?''

ଲୋକଟିର ବକ୍ତବ୍ୟ ଶୁଣି ରାଜାଙ୍କ ଓଠରେ ସ୍ମିତହସ ଖେଳିଗଲା । ସେ ତୁରନ୍ତ ଉକ୍ତ ବ୍ୟକ୍ତିଙ୍କୁ ନିଜର 'ମନ୍ତ୍ରୀ' ଭାବେ ଘୋଷଣା କଲେ । ପରଦିନ ମୁକ୍ତାମାଳ ନେଇ ଫେରିଯାଇଥିବା ବୁଦ୍ଧିଜୀବୀଗଣ ଆସି ରାଜାଙ୍କ ପାଖରେ ଫେରାଦ ହେଲେ ଯେ,ସେମାନେ ରାଜାଙ୍କଠାରୁ ପାଇଥିବା ମୁକ୍ତାମାଳଟି ଅସଲି ନୁହେଁ ନକଲି । କ୍ରୋଧାନ୍ୱିତ ରାଜା ଉତ୍ତର ଦେଲେ :''ଗତକାଲି ତୁମ ଉତ୍ତର ତ ଖୁବ୍ ନକଲି ଥିଲା ! ନୁହେଁ କି ?'' ନିରୁପାୟ ହୋଇ ସେମାନେ ଫେରିଯାଇଥିଲେ ।

ସତ୍ୟକୁ ସାମ୍ନାକରି ନ ପାରି ଅନ୍ୟକୁ ସୁହାଇବା ପରି କାର୍ଯ୍ୟ କରୁଥିବା ବୁଦ୍ଧିଜୀବୀମାନଙ୍କ ଭାଗରେ ହୁଏତ ଏଇମିତି ନକଲି ମୁକ୍ତାମାଳ ପଡିଥାଏ, ଏକଥା କୌଣସି ବୁଦ୍ଧିଜୀବୀ ବିସ୍ମରଣ ହେବା ଉଚିତ ନୁହେଁ ।



# କ୍ରିକେଟ୍ ଓ କାରଗିଲ୍

ଏବେ ବିଭିନ୍ନ ପତ୍ରପତ୍ରିକା ଏବଂ ଟେଲିଭିଜନରେ ଗୋଟାଏ କଥା ବାରମ୍ବାର କୁହାଯାଉଛି । ସମାପ୍ତ ହୋଇଥିବା ଶତାବ୍ଦୀର ଶେଷ ବିଶ୍ୱକପ୍ କ୍ରିକେଟ ଖେଳ ସମ୍ପର୍କରେ ଟିକିନିଖି ବିବରଣୀ ଦେବାରେ ଜଣେ ଯୁବକ ସଫଳ ହେଉଥିବା ସମୟରେ, ପଡୋଶୀ ରାଷ୍ଟ୍ର ସ୍ୱଦେଶର ସୀମା ଅତିକ୍ରମ କରିବା ଦ୍ୱାରା ଉପୁଜିଥିବା ଯୁଦ୍ଧାବସ୍ଥା ଓ ଆନ୍ତର୍ଜାତିକ ସମ୍ପର୍କ ନେଇ ଉକ୍ତ ଯୁବକ କେବଳ ଅନଭିଜ୍ଞ ନୁହେଁ, ବରଂ ସେ ସମ୍ପର୍କରେ ଜାଣିବାକୁ ଆଗ୍ରହୀ ମଧ ନୁହଁ । ଦେଶର ସ୍ୱାଧୀନତା ଅପେକ୍ଷା ଖେଳରେ ବିଜୟ ତା' ପାଇଁ ମୁଖ୍ୟ ବିଷୟ ହେଇପଡିଛି । ଏଥିନେଇ ଅନେକ ବୁଦ୍ଧିଜୀବୀ ଯୁବମାନସକୁ ଦାୟୀ କରି ପ୍ରକୃତ ସମସ୍ୟାକୁ ଏଡାଇ ଯାଉଥିବାର ମଧ୍ୟ ଲକ୍ଷ୍ୟ କରାଯାଉଛି । ଯୁବମାନସର ଦେଶପ୍ରୀତି ସମ୍ପର୍କରେ ଆମର ସନ୍ଦେହ କରିବାର କୌଣସି ବଳିଷ୍ଠ କାରଣ ଥିଲା ଭଳି ମନେହେଉନାହିଁ । ତା' ଯଦି ହୋଇଥାନ୍ତା ତେବେ ବିଶ୍ୱକପ କ୍ରିକେଟ ଖେଳର ଏକ ପର୍ଯ୍ୟାୟରେ ଭାରତଠାରୁ ଏବଂ ଶେଷଦିନ ଅଷ୍ଟ୍ରେଲିଆଠାରୁ ପାକିସ୍ତାନର ଖେଳାଳିମାନେ ହାରିଯିବା ଫଳରେ ଭାରତର ବିଭିନ୍ନ ସହରରେ ଯୁବକମାନଙ୍କର ଶୋଭାଯାତ୍ରା ବାହାରି ନଥାନ୍ତା । ଏଇ ଖେଳରେ ପାକିସ୍ତାନ ହାରିବା ଫଳରେ ବିଶ୍ୱରେ ସବୁଠୁ ଖୁସି ଭାରତୀୟ ତଥା ଏହାର ଯୁବକମାନେ ହୋଇଛନ୍ତି । କାରଣ ପାକିସ୍ତାନକୁ ସେମାନେ ସହ୍ୟ କରିପାରନ୍ତି ନାହିଁ । ଅପରପକ୍ଷରେ ଏହା ହିଁ ଏକ ଜାତୀୟବୋଧର ମାପକାଠି ।

ଆଜିର ଯୁବକ ପାଇଁ ଜାତୀୟତାବାଦ ଗୋଟାଏ ଫାଙ୍କାଗୁଳିର ଆବାଜ ଛଡା ଅନ୍ୟ କିଛି ନୁହେଁ । ଦାରିଦ୍ର୍ୟ ଓ ବେକାରିର ଯନ୍ତ୍ରଣାରୁ ନିଜକୁ ସାମୟିକ ମୁକ୍ତି ରଖିବା ପାଇଁ ସେମାନେ ଅନ୍ୟାନ୍ୟ କାର୍ଯ୍ୟ ପରି କ୍ରିକେଟ ପ୍ରେମରେ ମଧ୍ୟ ପଡୁଛନ୍ତି । ସାଂପ୍ରତିକ ଯୁବକଙ୍କ ରୁଗ୍ଣ ମାନସିକତା ନେଇ ଆମେ ଅନେକ କଥା କହିପାରିବା, ମାତ୍ର ସେ ସବୁ କେବଳ ସମୟ ଓ ଭାଷାର ଅପଳାପ ହେବ । ବେଳେ ବେଳେ ମନେ ହେଉଚି, ସେମାନେ କ୍ରିକେଟର ପ୍ରେମରେ ପଡ଼ି ବାସ୍ତବତାଠାରୁ ଦୂରେଇ ରହିବାକୁ ଚେଷ୍ଟା କରୁଛନ୍ତି । ସେମାନଙ୍କର ଏଇ ବିନୋଦନ ପ୍ରକ୍ରିୟାଟି ଯେ କ୍ଷଣସ୍ଥାୟୀ, ତାହା ସେମାନେ ହୃଦୟଙ୍ଗମ କରିବା ଭଳି ସେମାନଙ୍କର ମାନସିକତାର ମଧ୍ୟ ଅଭାବ ରହିଛି ।

ବାସ୍ତବତାଠାରୁ କାହାରି ନିସ୍ତାର ନାହିଁ । ଜଣେ ବିଶିଷ୍ଟ କବିଙ୍କର କବିତାଟିଏ ମନେ ପଡୁଛି, କବିତାର ଶୀର୍ଷକ ଥିଲା 'ମାନସରୋବର' । ଗୋଟିଏ ମଧ୍ୟବିତ୍ତ ଶ୍ରେଣୀ ସରକାରୀ କର୍ମଚାରୀର ପୁତ୍ର ଅସୁସ୍ଥ ହେଇଚି । ପାଖରେ ଆବଶ୍ୟକୀୟ ପଇସା ନାହିଁ ଔଷଧ କିଣିବା

ପାଇଁ । ଦୁଃଖରେ ଅଫିସକୁ ଯାଇଛି । ସେଠି ମଧ୍ୟ ମୁକ୍ତିନାହିଁ ତା'ର । ଉପରିସ୍ଥ ହାକିମ ବିରକ୍ତ ହେଇ ତା' ଉପରକୁ ଫାଇଲ ଫୋପାଡିଛନ୍ତି । ଗ୍ଳାନି ଜର୍ଜରିତ କର୍ମଚାରୀଟି ଦୁଃଖ ଓ ରାଗରେ ଛୁଟି ନେଇ ଫେରିଆସିଛି ଅଫିସରୁ । ଫେରିବା ରାସ୍ତାରେତା'ର ପଡିଛି ସିନେମା ହଲ, ଯେଉଁଠି ମନମୁଗ୍ଧକର ଛବିଟିଏ ପଡିଛି । କର୍ମଚାରୀଟି ନିଜର ଦୁଃଖ ଓ ବେଦନାକୁ ଭୁଲିଯିବା ପାଇଁ ଚଳଚ୍ଚିତ୍ର ପ୍ରେକ୍ଷାଳୟରେପଶିଯାଇଛି । ଅଥଚ ଛବି ଦେଖୁଥିବା ବେଳେ ମଝିରେ ତା'ର ମନେପଡୁଥାଏ- ଆଉ ମାତ୍ର ଅଳ୍ପ ସମୟ ପରେ ସେ ଏଠୁ ବାହାରିବା ପରେ ପୁଣି ସେଇ ଦୁଃଖ ଓ ପୁଅ ପାଇଁ ଔଷଧ ନ କିଣି ପାରିବାର ଗ୍ଳାନି ପରିନିଷ୍ଠୁର ବାସ୍ତବତାକୁ ସାମ୍ନା କରିବ । ଏଇ କ୍ଷଣିକ ସମୟ (ପ୍ରେକ୍ଷାଳୟରେ ଉପସ୍ଥିତି ସମୟ) ଯେମିତି ପାଲଟି ଯାଇଛି 'ମାନସରୋବର' । ଯେତେ ଚେଷ୍ଟାକଲେ ବି ଦୁର୍ଯ୍ୟୋଧନ ଆତ୍ମଗୋପନ କରିପାରିବ ନାହିଁ ଚିରକାଳ ସେଠାରେ ତାକୁ ସତ୍ୟ କଥା ତଥା ବାସ୍ତବରେ ଭୀମକୁ ସାମ୍ନା କରିବାକୁ ହିଁ ହେବ । ଏହାହିଁ 'ମାନସରୋବର' କବିତାର ବକ୍ତବ୍ୟ । କିନ୍ତୁ ଆଉ କେତେ ଦିନ ଆମର ଯୁବମାନସ ବାସ୍ତବତାକୁ ଭୁଲି କ୍ରିକେଟରୂପୀ ମାନସରୋବରରେ ଆତ୍ମଗୋପନ କରିବେ ତାହିଁ ଏବେ ଚିନ୍ତାର ବିଷୟ ।

ଯେଉଁମାନେ ସେମାନଙ୍କୁ 'ଦେଶପ୍ରେମ' ନେଇ ଦୋଷାରୋପ କରୁଛନ୍ତି, ସେମାନେ ଗୋଟିଏ କଥା ଭୁଲି ଯାଉଛନ୍ତି ଯେ ସେମାନଙ୍କର ଦେଶପ୍ରେମ ଜାଗ୍ରତ ହେବା ପାଇଁ ଏଯାବତ୍ ଯୌନ ଉଦ୍ଦୀପକ ବଟିକା 'ଭାଏଗ୍ରା' ପରି କୌଣସି ଔଷଧ ତିଆରି ହୋଇନାହିଁ । ଏହାଛଡା ଆମ ଶିକ୍ଷାୟତନ ଓ ସମାଜିକ ପରିବେଶ ଆମରି ଯୁବକମାନଙ୍କୁ ଆଜି ପର୍ଯ୍ୟନ୍ତ ଦେଶ ପାଇଁ ବଳିଦାନ ଦେବା ପାଇଁ କୌଣସି ପାଠ୍ୟକ୍ରମ ଅଥବା ଖସଡା ତିଆରି କରିନାହିଁ । ଶିକ୍ଷା ଏବେ ବୃତ୍ତିଭିତ୍ତିକ ହୋଇଥିବାରୁ ଏ ନେଇ ମୁଣ୍ଡ ଖେଳାଇବାର ଅବକାଶ ମଧ୍ୟନାହିଁ ।

ଅଥଚ ଶହେ ବର୍ଷ ତଳେ ଆମ ଶିକ୍ଷାୟତନରୁ ବାହାରିଥିଲେ ଅନେକ ଦେଶପ୍ରେମୀ ଯାହାଙ୍କ ଯୋଗୁଁ ସ୍ୱାଧୀନ ଭାରତଟିଏ ଦେଖିବାର ସୁଯୋଗ ଆମକୁ ମିଳିଲା । ଅଥଚ ଏଇ ପଚାଶ ବର୍ଷ ଭିତରେ, ଉକ୍ତ ଶିକ୍ଷାୟତନ ଗୁଡିକରୁ ବାହାରିଲେ ଅନେକ 'ଦେଶଦ୍ରୋହୀ ଛଦ୍ମବେଶରେ, ସେମାନେ 'ଗଣ' ପାଇଁ ଚିନ୍ତା ନ କରି 'ଜଣ' ପାଇଁ ବ୍ୟସ୍ତ ରହିଲେ । ବ୍ୟକ୍ତି ପୂଜା ଏକ ଧର୍ମରେ ପରିଣତ ହୋଇଗଲା । ସେଇଥିପାଇଁ ତ ଜଣେ କହିଥିଲେ, ଖାଲି ପେଟରେ କେହିକେବେ ଦେଶପ୍ରେମୀ ହୋଇ ନାହିଁ ।

ବିଶିଷ୍ଟ କବି ବାଇରନ କିନ୍ତୁ ଯଥାର୍ଥରେ କହିଛନ୍ତି : ଯିଏ ତା'ର ଦେଶକୁ ଭଲ ପାଏନା, ସେ କାହାକୁ ଭଲ ପାଇପାରିବନି (He who loves not his country, can love nothing) ଏବଂ ହୋରେସ୍‌ଙ୍କ ଭାଷାରେ : ନିଜର ଦେଶ ପାଇଁ ମୃତ୍ୟୁବରଣ କରିବା ଏକ ମଧୁର ତଥା ଗୌରବର କଥା (It is sweet and glorious to die for one's Country)

କିନ୍ତୁ ସମସାମୟିକ ରାଜନୈତିକ ନେତୃବର୍ଗଙ୍କ 'ଦେଶପ୍ରେମ' ନେଇ ଦୀର୍ଘ ଭାଷଣ ଶୁଣିବା ବେଳେ ଜନସନ୍‌ଙ୍କ ସେଇ ଲୋକପ୍ରିୟ ଉକ୍ତିଟି ବାରମ୍ବାର ମନେପଡେ : ବଦ୍‌ମାସ ଲୋକର ଶେଷ ଭରସା ହେଇଚି ଦେଶପ୍ରେମବାଦ,''(Patriotism is the last refuge of a scourdrel)

ଭଗବାନ ସବୁ ମଣିଷକୁ ଗୋଟିଏ ପୃଥିବୀ ଦେଇଛନ୍ତି ଭଲ ପାଇବା ପାଇଁ, ମାତ୍ର ମଣିଷର ହୃଦୟ ଖୁବ କ୍ଷୁଦ୍ର ହୋଇଥିବାରୁ, ଗୋଟିଏ ନିର୍ଦ୍ଦିଷ୍ଟ ଭୂଖଣ୍ଡ-ପ୍ରୀତି ତା'ର ସର୍ବସ୍ୱ ହେଇ ଯାଇଛି । ଜୁଲିୟସ ସିଜର ନାଟକରେ ସେଇଥିପାଇଁ ସେକ୍‌ସପିଅର କହିଛନ୍ତି : କିଏ ଏଠାରେ ଏପରି ଖରାପ ବ୍ୟକ୍ତି ଅଛି ଯିଏ ତା'ର ଦେଶକୁ ଭଲ ପାଇବନି ? ''(Who is here so vile that will not love his Country) ଠିକ୍ ସେଇପରି, ଆଲୋଚନାଟି ଶେଷ କରିବା ଆଗରୁ ଯୁବମାନସକୁ, ବଙ୍କର ହିଲରେ ୧୮୨୫ ମସିହାରେ ଡାନିଏଲ ୱିଲ ଦେଇଥିବା ଭାଷଣଟି ମନେ ପକେଇବି : ଆମର ଦେଶ, ଆମର ସମଗ୍ର ଦେଶ ଏବଂ ଅନ୍ୟ କିଛି ନୁହଁ କେବଳ ଆମରି ଦେଶ ହିଁ ଆମର ଲକ୍ଷ୍ୟ ହେଉ ।'' (Let our object be, our Country and nothing but our Country) । କ୍ରିକେଟ୍ ପରି କାରଗିଲ୍ ମଧ୍ୟ ଆମ ମାନସିକତାର ଅଂଶୀଦାର ହେଉ ।



# ବାଙ୍କ ବାବୁଙ୍କ କଇଁଛ

**ତା**ଙ୍କ ସହ ମାତ୍ର ଥରଟିଏ ଭେଟ ହୋଇଛି । ତା'ପୁଣି ତାଙ୍କ ବାସଭବନରେ । ପ୍ରଥମ ଦିନର ସାକ୍ଷାତ୍‌ରେ ହିଁ ମୋର ଧାରଣା ଭୁଲ୍ ପ୍ରମାଣିତ ହେଲା । ତାଙ୍କ ସଂପର୍କୀୟ ଧାରଣାଟି ଖବରକାଗଜରୁ ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ମନ୍ତବ୍ୟ ପଢ଼ି ସମ୍ଭବତଃ ହୋଇଥିଲା । ଯେତେଦୂର ମନେପଡୁଛି, ପୁରୀର ବେଳାଭୂମି ମହୋତ୍ସବ ଉଦ୍‌ଘାଟନ ଉତ୍ସବରେ ଭାଷଣ ପ୍ରସଙ୍ଗରେ ବିଜୁ ପଟ୍ଟନାୟକ କହିଥିଲେ ଯେ ବାଙ୍କ ବିହାରୀ ଦାସଙ୍କୁ ମାଡ଼ ହେବା ଉଚିତ୍ । (ପାଠକେ ବିଜୁ ବାବୁଙ୍କ ଶୈଳୀକୁ ମନେ ପକାଇ ପାରନ୍ତି )ତାଙ୍କ କ୍ରୋଧର କାରଣ ଥିଲା-ପ୍ରଦୂଷଣ ଓ ପରିବେଶ ସଚେତନତା ନାଁରେ ବାଙ୍କ ବାବୁ ପୁରୀ ସମୁଦ୍ର ବେଳାରେ ପଞ୍ଚତାରକା ହୋଟେଲ୍ ନିର୍ମାଣ ପାଇଁ ସରକାରୀ ଅନୁମତିର ବିରୋଧ କରୁଛନ୍ତି । ବିଜୁବାବୁ, ଅପରପକ୍ଷରେ, ଓଡିଶାର ଦ୍ରୁତ ଆର୍ଥିକ ସମୃଦ୍ଧି ପାଇଁ ଶିଳ୍ପାୟନକୁ ଗୁରୁତ୍ୱ ପ୍ରଦାନ କରୁଛନ୍ତି । ଓଡ଼ିଶାର ଏହା ଦୁର୍ଭାଗ୍ୟ ଯେ ଦୁଇ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବକୁ ନେଇ ଗୋଟିଏ ସମାଧାନ ପନ୍ଥା ଖୋଜିବା ପାଇଁ ଏଇ ଦୁଇ ପରସ୍ପର ବିରୋଧୀ ବ୍ୟକ୍ତିତ୍ୱ କୌଣସି ସହମତିରେ ପହଞ୍ଚି ପାରିଲେ ନାହିଁ । ଦେଶର ସମୃଦ୍ଧି ପାଇଁ ଶିଳ୍ପର ଅଭ୍ୟୁଦୟ ହେବା ଉଚିତ୍, ତା'ସହ ଶିଳ୍ପାୟନଜନିତ ପ୍ରଦୂଷଣକୁ ପ୍ରତିହତ କରିବା ଲାଗି ମଧ୍ୟ ସରକାରୀ ଓ ବେସରକାରୀ କାର୍ଯ୍ୟକ୍ରମ ଗ୍ରହଣ କରିବା ବିଧେୟ ।

ତେବେ ବାଙ୍କ ବାବୁଙ୍କ ସହ ମାତ୍ର କେତୋଟି ଘଣ୍ଟା ବିତାଇବା ପରେ ମନେ ହେଲା, ଶିଳ୍ପ ନାଁରେ ଆମେ ପରିବଶେକୁ ଜଳାଞ୍ଜଳି ଦେବା ପାଇଁ ନିଷ୍ପତ୍ତି ନେବା ଆଦୌ ବୁଦ୍ଧିମାନର କାମ ହେବନାହିଁ । ଯେହେତୁ କୌଣସି ସରକାର ନିଜ ଭୋଟ୍ ରାଜନୀତି ପାଇଁ ଶିଳ୍ପ ସ୍ଥାପନର କୁହାଟ ଛାଡ଼େ ଏବଂ ସେଠି ବାଙ୍କ ବାବୁଙ୍କ ବଜ୍ରନିନାଦ ସ୍ୱର ପହଞ୍ଚିଯାଏ- ତା'ହେଲେ ସେ ସରକାରଙ୍କୁ ଆଶ୍ଚର୍ଯ୍ୟ ହେବାରେ ମଧ୍ୟ କିଛି ନାହିଁ । ସକ୍ରିୟ ରାଜନୀତିକୁ ଛାଡ଼ପତ୍ର ଦେଇନଥିଲେବି ବାଙ୍କ ବାବୁଙ୍କୁ ଏବର ଓଡ଼ିଶା ଜଣେ ପରିବେଶବିତ୍ ଭାବେ ଜାଣେ । ଚିଲିକାର ଚିଙ୍ଗୁଡି ଚାଷ ବିରୁଦ୍ଧରେ ଆନ୍ଦୋଳନ କରିବାଠାରୁ ଆରମ୍ଭ କରି ଗହୀର ମଥାରେ ଅଲିଭ୍ ରିଡ୍‌ଲେ ନାମକ କଇଁଛମାନଙ୍କ ଅଣ୍ଡା ଦେବା ପ୍ରସଙ୍ଗ ନେଇ ତାଙ୍କର ମୁଣ୍ଡବିନ୍ଧା । ପ୍ରଥମେ ପ୍ରଥମେ ଏ ଲେଖକର ମଧ୍ୟ ଧାରଣା ଜନ୍ମିଥିଲା ଏ ବାଙ୍କବିହାରୀଙ୍କର କ'ଣ ଆଉ କିଛି ଧନ୍ଦା ନାହିଁ ? ବର୍ଷସାରା ଖବରକାଗଜମାନଙ୍କ ପୃଷ୍ଠାରେ 'କଇଁଛ ମାନଙ୍କର ଅଣ୍ଡା ଦେବାକୁ ନଆସିବା ଯୋଗୁଁ ଉଦ୍‌ବେଗ' ପ୍ରକାଶ କରିବା କ'ଣ ଏମିତି ଗୋଟିଏ ବିଶିଷ୍ଟ ଖବର ? ମାତ୍ର କିଛି ବର୍ଷ ହେଲା ଯେତେଥର

ଏ କଇଁଛମାନଙ୍କ କଥା ନେଇ ମୁଣ୍ଡ ଖେଳେଇଛି ସେତିକିଥର ଏକ ଅଜଣା ଆତଙ୍କ ଘାରିଛି । ମନ ଅଥୟ ହୋଇଛି । ହୁଏତ ବାଙ୍କ ବାବୁଙ୍କ ସେଇ କ୍ଷୀଣ ସ୍ୱରଟି ବାରମ୍ୱାର ଅନୁରଣିତ ନହୋଇଥିଲେ ଆଜି ଅଲିଭ୍ ରିଡ୍‌ଲେମାନେ ସେଠାକୁ ଅଣ୍ଡା ଦେବାକୁ ଆସିବା ସଂପୂର୍ଣ୍ଣ ବନ୍ଦ ହୋଇସାରନ୍ତାଣି । କେବଳ ପର୍ଯ୍ୟଟନ ସ୍ଥଳ ନୁହେଁ, ଭାରତର ଏଇ ପ୍ରସିଦ୍ଧ ଲୁଣା ଜଙ୍ଗଲଟି ଧ୍ୱଂସ ପାଇ ସାରନ୍ତାଣି । ମୋଟାମୋଟି କହିବାକୁ ଗଲେ ଭିତରକନିକାର କଇଁଛମାନଙ୍କ ସୁରକ୍ଷା ନେଇ ବାଙ୍କ ବାବୁଙ୍କ ଆଖିରୁ ନିଦ ଚୋରି ହୋଇଗଲା ।

ନିକଟରେ ତାଙ୍କ ଆତ୍ମଜୀବନୀ ସଂଗ୍ରାମର ଶେଷ ନାହିଁ ପ୍ରକାଶ ପାଇଛି । ଏଇ ବହିରେ ବାଙ୍କ ବାବୁ ତାଙ୍କ ରାଜନୈତିକ ଜୀବନର ଉତ୍‌ଥାନ ଓ ପତନର ଅନେକ କାହାଣୀ ବର୍ଣ୍ଣନା କରିଛନ୍ତି । ଓଡ଼ିଶା ମନ୍ତ୍ରିମଣ୍ଡଳରେ ହେଉଥିବା ଗୋଡ଼ ଟଣାଟଣି (ରାଜନୀତିରେ ହାତ ଟଣାଟଣି ଥାଏକି ?)ର ବାସ୍ତବ ଚିତ୍ର ସେ ଦେଇଛନ୍ତି ଏଇ ବହିରେ । ନିଜ ମନ୍ତ୍ରୀତ୍ୱକୁ ବେଖାତିର କରି ଜରୁରୀ ପରିସ୍ଥିତି ଘୋଷଣା ପୂର୍ବରୁ ସେ କିପରି ଜୟପ୍ରକାଶ ନାରାୟଣଙ୍କ ସହ ସଂପର୍କ ରଖିଥିଲେ ଏବଂ ପରବର୍ତ୍ତୀ ସମୟରେ ସେଥିପାଇଁ ତାଙ୍କୁ କିପରି ଏହାର ମୂଲ୍ୟ ଦେବାକୁ ପଡ଼ିଥିଲା ସେସବୁ ଏଥିରେ ସ୍ଥାନିତ ହୋଇଛି ।

ତେବେ ସଂଗ୍ରାମର ଶେଷ ନାହିଁ, ଆତ୍ମଜୀବନୀରେ ଭିତରକନିକା ଅଥବା ଚିଲିକା ବଞ୍ଚାଅ ଆନ୍ଦୋଳନରେ ସଂପୃକ୍ତ ହେବା ଘଟଣାକୁ ବାଙ୍କ ବାବୁ ପ୍ରକାଶ କରି ନାହାଁନ୍ତି । ସୁଖଦ ବିଷୟ ହେଉଛି, ତାଙ୍କର ଧର୍ମପତ୍ନୀ ସ୍ୱର୍ଗୀୟା ସୁଧାମଞ୍ଜରୀ ଦାସ ଏହି ପୁସ୍ତକର ଦ୍ୱିତୀୟ ଭାଗରେ ତାଙ୍କ ସ୍ୱାମୀଙ୍କ ସଂପର୍କରେ ଲେଖିଥିବା ୧୧୦ ପୃଷ୍ଠା ବ୍ୟାପୀ କାହାଣୀରେ ଭିତରକନିକା ବଞ୍ଚାଅ ଆନ୍ଦୋଳନ ଉପରେ କିଛି ଆଲୋକପାତ କରିଛନ୍ତି । ଠାଏ ସେ ଲେଖିଛନ୍ତି :

ରାଜନଗର, ମହାକାଳପଡ଼ା ବ୍ଲକ୍‌ରେ ଭିତରକନିକା ଏକ ସାମୁଦ୍ରିକ ଉପକୂଳ ଅଞ୍ଚଳ । ପୃଥିବୀରେ ଯେତେ ଅଭୟାରଣ୍ୟ ଓ ଲୁଣା ଜଙ୍ଗଲ ରହିଛି, ସେମାନଙ୍କ ମଧ୍ୟରେ ଭିତରକନିକା ଅନୁପମ । କିଛି ଧନୀ ଲୋକ ଏଠାରେ ଚିଙ୍ଗୁଡି ଚାଷ କରି ରାତାରାତି ବଡ଼ ଲୋକ ହେଉଛନ୍ତି । କେତେକ ସବୁଜ ସ୍ୱପ୍ନ ମଧ ଦେଖନ୍ତି ତାକୁ ସଫଳ ରୂପାୟନ କରିବାକୁ । ଗରିବ ଚାଷୀମାନଙ୍କୁ ପ୍ରବର୍ତ୍ତାଇ ଉଚ୍ଚ ଦରରେ ତାଙ୍କ ଜମିକୁ କିଣି ଏବଂ ଦଖଲ କରି କୋଟିକୋଟି ଟଙ୍କା ବୈଦେଶିକ ମୁଦ୍ରା ଅର୍ଜନ କରି ନିଜ ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଢ଼ାଇ ଅଛନ୍ତି । ଏଥିରେ ବିଧାନସଭା ସଦସ୍ୟ, ମନ୍ତ୍ରୀଙ୍କ ପୁତ୍ର ଅଛନ୍ତି । ପ୍ରଶାସକମାନେ ମଧ ଅଛନ୍ତି । ବ୍ୟବସାୟୀ ଆଦି ଅଛନ୍ତି । ଏହା ଏକ୍‌ଦମ୍ ଗରିବ ବିରୋଧୀ । ମତ୍ସ୍ୟଜୀବୀ ଓ ଉପକୂଳ ଅଞ୍ଚଳର କ୍ଷୁଦ୍ର ଚାଷୀଙ୍କ ବିରୋଧୀ ମଧ । ସେମାନଙ୍କୁ ଏକତ୍ରିତ କରି ସେମାନଙ୍କ ଦାବି ବିଷୟରେ ତାଙ୍କୁ ସଚେତନ କରାଇବା ବହୁ କଷ୍ଟସାଧ । ଜଙ୍ଗଲକୁ ଭଲପାଅ, ଗଛଲତାକୁ ଭଲ ପାଅ, ଏଇ ଦୀକ୍ଷା ନନେଲେ ଅନନ୍ୟ ସାଧାରଣ ପ୍ରାକୃତିକ ସୌନ୍ଦର୍ଯ୍ୟ ବି ନଷ୍ଟ ହୋଇଯିବ । ଭିତରକନିକାର ବିଶେଷତ୍ୱ ହେଲା

ଅଲିଭ୍ ରିଡ୍‌ଲେ ଟର୍‌ଟଲ ଅର୍ଥାତ୍ ଏକ ବିଶେଷ ପ୍ରକାର କଇଁଛର ଆବାସସ୍ଥଳୀ । ଅଣ୍ଡା ଦେବା ସ୍ଥଳୀ । ମଧ୍ୟ । କ୍ରୋକୋଡ଼ାଇଲ୍ ମଧ୍ୟ ସେଠାରେ ଏକ ଅସାଧାରଣ ଜାତିର କୁମ୍ଭୀର । ଏମାନଙ୍କୁ ରକ୍ଷା କରିବାକୁ ହେବ । ଏହାର ବଂଶଧରକୁ ବଞ୍ଚାଇବାକୁ ହେବ । ଉପକୂଳବର୍ତ୍ତୀ କ୍ଷୁଦ୍ର ଚାଷୀଙ୍କ ସ୍ୱାର୍ଥ ରକ୍ଷା କରିବାକୁ ହେବ । ମତ୍ସ୍ୟଜୀବୀଙ୍କ ପରମ୍ପରା ଅନୁଯାୟୀ ତାଙ୍କର ଜୀବିକା ରକ୍ଷା କରିବା ପାଇଁ ହେବ । କେତେକ ମୁଷ୍ଟିମେୟ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ଏହାକୁ ବଳିଦାନ କରିଦେବା ଉଚିତ୍ ନୁହେଁ । ବାଙ୍କ ବିହାରୀଙ୍କ କାମ୍ୟ, ଧ୍ୟେୟ,ଶୟନେ, ସପନେ, ନିଶି ଜାଗରଣେ ଏହାହିଁ ଏକମାତ୍ର ଚିନ୍ତା । ଦେହ ଏବେ ସର୍ବଦା ଅସୁସ୍ଥ । ଆଣ୍ଠୁରେ ଫୁଲା ରହିଅଛି । ଛୋଟେଇ ଛୋଟେଇ ଚାଲୁଛନ୍ତି, ସବୁ ଅନିୟମିତ । ଖାଦ୍ୟ, ସ୍ନାନ, ଶୟନ ଇତ୍ୟାଦି ।''

ସୁଧା ମଞ୍ଜରୀ ଦେବୀଙ୍କ ରଚନା ପଢ଼ିବା ପରେ ମନେହେଲା କଇଁଛମାନଙ୍କୁ ଭଲ ପାଇବାରେ ବାଙ୍କ ବାବୁଙ୍କର ନିଷ୍ଠା ରହିଛି, ଆବେଗ ମଧ୍ୟ ଅଛି । ଠିକ୍ ଗୋଟିଏ ଛୋଟ ପିଲା ତା'ର ପ୍ରିୟ ଖେଳନାକୁ ଭଲ ପାଇବା ପରି ସେ ନିଷ୍ଠା ଆହୁରି ନିବିଡ଼ ହେଉ ଓ ଆବେଗ ଆହୁରି ତୀବ୍ର ହେଉ - ଆଜି ଏତିକି ଆଶା କରିବା ।



# ବାୟା ଚଢ଼େଇର ବସା

ପ୍ରଥମଥର ପାଇଁ ତାଙ୍କୁ ଭେଟିଥିଲି ଶ୍ରୀମନ୍ଦିର ସାମ୍ନା ରଘୁନନ୍ଦନ ପାଠାଗାରର ଉପର ମହଲାରେ ଗୋଟିଏ କବିତା ଆସରରେ । ସମୟ ଥିଲା ସଂଧ୍ୟା ଏବଂ ମସିହା ୧୯୭୫ର ପ୍ରଥମ ଭାଗ । ପ୍ରଥମ ପରିଚୟରେ ହିଁ ତାଙ୍କ ପ୍ରେମରେ ଆକ୍ରାନ୍ତ ହେଲି ଏବଂ ପରେ ସେ ସଂପର୍କ ଘନିଷ୍ଠ ହେଲ । ଛନ୍ଦମୟ କବିତା ଗାଇବାରେ ସେ ଥିଲେ ପାରଙ୍ଗମ ଏବଂ କବିତା ପାଠୋତ୍ସବମାନଙ୍କରେ କବିତାର ସଂଯୋଜନାରେ ଏକ ନୂତନ ବିପ୍ଳବ ସେ ଆଣିଥିଲେ । ଖାସ୍ ସେଇଥିପାଇଁ ପ୍ରାୟତଃ ପୁରୀ ସହରର ସଂଭ୍ରାନ୍ତ କବିତା ପାଠୋତ୍ସବ ମାନଙ୍କରେ ତାଙ୍କର ଆବଶ୍ୟକତା ବେଶ୍ ବଢ଼ିଯାଇଥିଲା ସେତେବେଳେ । ଏବେ ଦୂରଦର୍ଶନ କିମ୍ୱା ଅନ୍ୟ କୌଣସି ସଭାରେ କବିତା ସଂଯୋଜନା ଦେଖିଲେ ଅଥବା ଶୁଣିଲେ ସେ ମନେପଡ଼ନ୍ତି ଛାଏଁଛାଏଁ ।

ଶବ୍ଦମାନେ ବରକୋଳି ପରି ଝରି ପଡ଼ନ୍ତି ତାଙ୍କ ମୁହଁରୁ ଟପ୍‌ଟପ୍ ବର୍ଷା ପରି । ସେ ଶବ୍ଦରେ ସଂଗୀତର ମୂର୍ଚ୍ଛନା ଆଣନ୍ତି । ପ୍ରାୟ ଗୋଟିଏ ଦଶନ୍ଧି ହେବ ସେ ଜଣେ ସଫଳ ସ୍ତମ୍ଭକାର ଭାବେ ଆମ ଗହଣରେ ପରିଚିତ । ତେବେ ସାଂପ୍ରତିକ ସମୟର ଅନେକ ଯୁବ ସାହିତ୍ୟିକ ହୁଏତ ଜାଣିନଥିବେ ଯେ ସେ ଏକଦା ସୁନ୍ଦର କବିତା ବି ଲେଖୁଥିଲେ । ଓଡ଼ିଶାରେ ପ୍ରଥମ ଥର ପାଇଁ ବିଶିଷ୍ଟ ଲେଖକମାନଙ୍କର ବ୍ୟକ୍ତିଗତ ପତ୍ରମାନଙ୍କୁ ଚିଠି ନାମକ ସାମୟିକ ସଂକଳନରେ ପତ୍ରସ୍ଥ କରି ବେଶ୍ ଚହଳ ସୃଷ୍ଟି କରିଥିଲେ ।

ଅନେକ ବର୍ଷ ପରେ ତାଙ୍କ ସହ ଯୋଗାଯୋଗ ହେଲା ଟେଲିଫୋନ୍‌ରେ ।

: ଯା' ଭିତରେ ମୁଁ ଗୋଟେ ଉପନ୍ୟାସ ଲେଖିଛି ।'' କଥା ପ୍ରସଙ୍ଗରେ ସେ କହିଲେ ।

ଆଚ୍ଛା, କ'ଣ ସେ ଉପନ୍ୟାସର ନାଁ ?'' କୌତୁହଳ ହୋଇ ମୁଁ ପଚାରିଲି ।

: ବସାଘର ।

: ବସାଘର । ଖୁବ୍ ଭଲ ନାଁଟେ ହୋଇଛି, ବହିଟିର ପ୍ରଚ୍ଛଦରେ ଯଦି ବାୟା ଚଢ଼େଇର ବସାର ଚିତ୍ରଟେ ଦିଆଯାଇଥାନ୍ତା ଖୁବ୍ ଭଲ ହୁଅନ୍ତା, ମୁଁ ଭାବୁଛି ।' କହି ପକାଇଲି ।

: ଭାବୁଚ କ'ଣ ? ଠିକ୍ ସେଇଆ ହୋଇଛି । ରଂଜିତ୍ ପରିଜା ଆଙ୍କିଛନ୍ତି । ସେ ହସି ହସି କହିଲେ । ଏକଥା ଶୁଣିବା ପରେ ମୁଁ କାଳ ବିଳମ୍ୱ ନକରି ପହଞ୍ଚିଲି ତାଙ୍କ ଘରେ । ଅନେକ ବର୍ଷର ସ୍ମୃତିଚାରଣ ଭିତରେ ସେ ଏଥର ହାତକୁ ବଢ଼େଇ ଦେଲେ ନିକଟରେ ଭାରତ ଭାରତୀ

ଦ୍ୱାରା ପ୍ରକାଶିତ ଉପନ୍ୟାସ 'ବସାଘର'କୁ । ଅଧ୍ୟାପକ ବିଶ୍ୱରଞ୍ଜନ ସବୁବେଳେ ରୋକ୍‌ଠୋକ୍ କଥା କୁହନ୍ତି । ହୁଏତ ସେଇ ବିଶିଷ୍ଟ କାରଣ ଯୋଗୁଁ ପ୍ରାୟ ପଚିଶ ବର୍ଷ ହେଲା ମୁଁ ତାଙ୍କୁ ଭଲ ପାଇ ଆସିଛି । 'ବସାଘର'ଟି ତାଙ୍କର ଆତ୍ମଜୀବନୀମୂଳକ ଉପନ୍ୟାସ । ଆଠଗୋଟି ପରିଚ୍ଛଦରେ ଏଇ ଉପନ୍ୟାସର କଳେବର ସମୃଦ୍ଧ । ପ୍ରତିଟି ପରିଚ୍ଛଦ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଗଳ୍ପର ପରିଚୟ ବହନ କରିଛନ୍ତି । ଅବିନାଶ ହେଉଛି ଏଇ ଉପନ୍ୟାସର ନାୟକ । ଯିଏ ଅନ୍ୟ କେହି ନୁହଁ, ଅଧ୍ୟାପକ ବିଶ୍ୱରଞ୍ଜନଙ୍କ ପ୍ରତିରୂପ ବୋଲି ଜଣାପଡ଼େ । ସବୁ ପରିଚ୍ଛଦ ଅଥବା ସ୍ୱତନ୍ତ୍ର ଗଳ୍ପରେ ଘରହିଁ ମୁଖ୍ୟ କଥା ଯେମିତି । ସ୍ୱତନ୍ତ୍ର ଗଳ୍ପର ଗୁମ୍ଫନରେ ଉପନ୍ୟାସ ରଚିବା ନୂଆ ପରମ୍ପରା ନୁହେଁ । ଓଡ଼ିଆରେ ନିମାଇଁ ପଟ୍ଟନାୟକଙ୍କର 'ଅନ୍ଧକାରର ମୁହଁ' ଠାରୁ ଆରମ୍ଭ କରି ଆଙ୍ଗ୍ଲୋଇଣ୍ଡିଆନ୍ ଔପନ୍ୟାସିକା ଗୀତା ମେହେଟ୍ଟାଙ୍କ 'ରିଭର୍ ସୂତ୍ର' ଏବଂ ବିକ୍ରମ ଚନ୍ଦ୍ରାଙ୍କ 'ଲଭ୍ ଏଣ୍ଡ ଲଙ୍ଗିଙ୍ଗ୍ ଇନ୍ ବମ୍ବେ' ଆଦିକୁଉଦାହରଣ ରୂପେ ଗ୍ରହଣ କରାଯାଇପାରେ । ତେବେ ପ୍ରତି ଗଳ୍ପରେ ଘର ହିଁ ଆଧିପତ୍ୟ ବିସ୍ତାର କରି ଉପନ୍ୟାସର ପରିଧିକୁ ସଂକୁଚିତ କରିଦେଇଛି ବୋଲି ଏ ଲେଖକର ଧାରଣା । ତେବେ ଯାହା କହିବା ପାଇଁ ସେ ଚାହିଁଛନ୍ତି ସମଗ୍ର ଉପନ୍ୟାସରେ ବେଶ୍, ସହଜରେ ସେ ନାୟକ ମୁହଁରେ କହିଛନ୍ତି ଅଥବା ନାୟିକାର ଅଭିମାନରେ ସେ କଥା ଫୁଟି ଉଠିଛି । ସାଂପ୍ରତିକ ଅଧ୍ୟାପନା ବୃତ୍ତିରେ ଡକ୍ଟରେଟ୍ ପାଇବା ପାଇଁ ଯେଉଁପ୍ରକାର ପତନୋନ୍ମୁଖୀ ପରମ୍ପରା ସୃଷ୍ଟି ହୋଇଛି, ଗିରୀଶ ଦା'ଙ୍କ ଚରିତ୍ର ମୁଖରେ ସେ କହିଛନ୍ତି : ସେ ପି.ଏଚ୍.ଡି ଡିଗ୍ରୀର କ'ଣ କିଛି ମୂଲ୍ୟ ଅଛି ଅବିନାଶ ? ଆମ ସମୟରେ ପ୍ରକୃତ ଆଗ୍ରହୀ ଓ ଅନୁସନ୍ଧିତ୍ସୁ ଅଧ୍ୟାପକମାନେ ଗବେଷଣା କରୁଥିଲେ । ବର୍ଷବର୍ଷ ଧରି ଗବେଷଣା ଭିତରେ ବୁଡ଼ି ରହୁଥିଲେ । ଆଉ ସେ ଗବେଷଣାର ଫଳ ନିଜ ଅଧ୍ୟାପନାରେ ବି ଉପଯୋଗ କରୁଥିଲେ । ଏବେ କିନ୍ତୁ ଗବେଷଣା ସହିତ ଅଧ୍ୟାପନାର କୌଣସି ସଂପର୍କ ହିଁ ନାହିଁ । ଡକ୍ଟରେଟ୍ ଡିଗ୍ରୀଟାଏ ହାସଲ କରିଦେଲା ପରେ ଅଧ୍ୟାପକମାନେ ଆଉ କ୍ଲାସ୍ ରୁମ୍‌ର ଏରୁଣ୍ଡି ବନ୍ଧ ଡେଉଁନାହାଁନ୍ତି ।' (ପୃଷ୍ଠା -୧୪) । ଶିକ୍ଷା ସମ୍ପର୍କରେ ସଂକୀର୍ଣ୍ଣ ଧାରଣା ଥିବା ଆଜିର ପିତାମାତା କିପରି କୋମଳମତି ଶିଶୁମାନଙ୍କ ଉପରେ ଅତ୍ୟାଚାର କରୁଛନ୍ତି ସେ ସଂପର୍କରେ ଠାଏ ସେ କହିଛନ୍ତି : ଶିକ୍ଷା ନାଁରେ ଛୋଟଛୋଟ ପୁଅ, ଝିଅଙ୍କୁ ପିଞ୍ଜରାବଦ୍ଧ ଶୃଙ୍ଖଳିତ ଶୁକପକ୍ଷୀ କରିଦେବାରେ ବାପା-ମା'ଙ୍କର କି ଆନନ୍ଦ ସତରେ । (ପୃଷ୍ଠା-୨୨)

ଜଣେ ଲେଖକର ପତ୍ନୀର ଅନୁଯୋଗକୁ ଅନୁରାଧା ଚରିତ୍ର ମାଧ୍ୟମରେ ସେ କହିଛନ୍ତି : (୧) ତୁମେ ଚାକିରି କରିବାର ପ୍ରାୟ ସତେଇଶି ବର୍ଷ ବିତିଗଲା ପରେ ମଧ୍ୟ କେଉଁଠି ଘର ଖଣ୍ଡିଏ କରିପାରିଲ ନାହିଁ କି ଟାଖଣ୍ଡେ ଜମି କିଣି ପାରିଲ ନାହିଁ ।(୨) ତୁମ ଅଧ୍ୟାପକ ଜୀବନର ଉତ୍କର୍ଷ ପ୍ରମାଣ କରିବା ପାଇଁ ଡକ୍ଟରେଟ୍ ଡିଗ୍ରୀଟିଏ ମଧ୍ୟ ହାସଲ କରିପାରିଲ ନାହିଁ । (୩) ଜଣେ ଲେଖକ ଭାବରେ କୌଣସି ସରକାରୀ ବା ବେସରକାରୀ ସମ୍ମାନ ସ୍ୱୀକୃତି ହାସଲ କରିପାରିଲ ନାହିଁ । ଏଣୁତେଣୁ ବାଜେ ଲେଖା ଛାଡ଼ି ସୁନ୍ଦର ଉପନ୍ୟାସଟିଏ ମଧ୍ୟ ତୁମ କଲମରୁ ସମ୍ଭବ ହେଲାନାହିଁ ।' (ପୃଷ୍ଠା ୪୭-୪୮) ।

ପ୍ରତିପୃଷ୍ଠାରେ ନିଜ ଅଙ୍ଗେ ନିଭେଇବା ଘଟଣା ସେ ବର୍ଣ୍ଣନା କରିଛନ୍ତି ଯେମିତି । ଠାଏଠାଏ ତାଙ୍କର ଅନୁଭବ ଶବ୍ଦର ସରହଦ ଡେ଼ଇଁ କବିତାର ମହିମାରେ ମଣ୍ଡିତ ହୋଇ ଯାଇଛନ୍ତି ଯେମିତି । ଉଦାହରଣସ୍ୱରୂପ, (କ) ଆତ୍ମୀୟତାର ବନ୍ଧନରେ ପରସ୍ପର ସହିତ ଅଭିନ୍ନ ହୋଇ ବନ୍ଧା ହୋଇଥିବା ମଣିଷମାନେ ଏକାଠି ରହିଲେ ମନକୁ ମନ ଘରଟିଏ ଗଢ଼ି ହୋଇଯାଏ, ଯେପରିକି ଗଛ ଡାଳର ଛାଇବି ଘରର ସୁଖ-ସୌଭାଗ୍ୟ ଦେଇପାରେ (ପୃଷ୍ଠା-୩୫)

(ଖ) ଏବେ ଚପଳ ପ୍ରଜାପତିର ଲଘୁଛନ୍ଦରେ ଘୂରି ବୁଲିବାର ବୟସ ତା'ର (ପୃଷ୍ଠା-୫୨) (ଗ) ସାତଦିନ ପର୍ଯ୍ୟନ୍ତ ସ୍କୁଲ ନଯାଇ ଗୋଟିଏ ଘର ଭିତରେ ଏକୁଟିଆ ବନ୍ଦ ରହି ମାନି ଅପା ଦିନେ ସଁବାଳୁଆରୁ ପ୍ରଜାପତି ହୋଇଯାଇଥିଲା । (ପୃଷ୍ଠା-୧୯) । ଆହୁରି ଅନେକ ଉଦାହରଣ ଦିଆଯାଇପାରିବ ଏକଥା ପ୍ରମାଣିତ କରିବା ପାଇଁ । ଉପନ୍ୟାସର ପ୍ରଥମ ପରିଚ୍ଛଦରେ ନାୟକ ଅବିନାଶ-ନିଜର ଦୈନନ୍ଦିନ କାର୍ଯ୍ୟକ୍ରମର ଖସଡ଼ା ପ୍ରସ୍ତୁତ କରିବା, ଯଥା :ସକାଳୁ ସାତଟାରେ ଉଠିବା, ଆଠଟାରେ ଗାଧୋଇବା, ନଅଟାରେ ବ୍ରେକ୍‌ଫାଷ୍ଟ କରିବା, ନଅଟାରୁ ଏଗାରଟା ଷଢ଼ି ଏବଂ ବାରଟାରେ ଲଞ୍ଚ୍ ପାଇଁ ଯୋଜନା କରିବା ଓ ବାରମ୍ବାର ସେ କଥା ମନେ ପକାଇବାହିଁ ମନେ ପକେଇଦିଏ ଔପନ୍ୟାସିକ ହେମିଙ୍ଗୱେଙ୍କ 'ଫେୟାର୍‌ୱେଲ୍ ଟୁ ଆର୍ମସ୍'ରେ ଅନ୍ତଃସତ୍ତ୍ୱା ପତ୍ନୀ ହାସ୍‌ପାତାଲରେ ଭର୍ତ୍ତି ହେବା ପରେ ନାୟକଟି କିପରି ତା କଥା ଭାବୁଛି, ବେଶ୍ ଚମତ୍କାର ଭାବେ ସେ କଥା ଔପନ୍ୟାସିକ ଦୋହରାଇଛନ୍ତି । ତେବେ ଉପନ୍ୟାସର ଶେଷରେ ଅରୁନ୍ଧତୀର ଆନନ୍ଦକୁ ଘରଟିଏ ବସାଇବା ଲାଗି ଦେଇଥିବା ପ୍ରସ୍ତାବ ଓ ଯୁକ୍ତି ସ୍ୱତଃ ମନେ ପକେଇଦିଏ ରବଟ ଫ୍ରଷ୍ଟଙ୍କ 'ଘର' ସଂପର୍କରେ ସେଇ ବିଶିଷ୍ଟ ଧାଡ଼ିଟି : ଘର ହେଉଛି ସେମିତି ଏକ ଜାଗା ଯେତେବେଳେ ତୁମେ ସେଠିକି ଯିବ, ସେମାନେ ତୁମକୁ ଘର ଭିତରକୁ ହିଁ ନେଇଯିବେ, (Home is the place where, when you have to go there, they have to take you in) ଠିକ୍ ଯେପରି ବାୟା ଚଢ଼େଇ ବସା, ଆନନ୍ଦ ଓ ଅରୁନ୍ଧତୀ କେବଳ ଏଠି ପ୍ରତୀକ ।



# ସେଇ ନିଃଶବ୍ଦ ଧ୍ୱନି

କ୍ରିକେଟ୍‌ର ଋତୁ ଏବେ ଚାଲିଛି, ମାତ୍ର କ୍ରିକେଟ୍ ଖେଳ ସଂପର୍କରେ କୌଣସି ମନ୍ତବ୍ୟ ପ୍ରକାଶ କରିବାର ଦୁଃସାହସ ଏ ଲେଖକର ନାହିଁ । ତେବେ ଚଳିତ ବିଶ୍ୱକପ୍ ପ୍ରତିଯୋଗିତାରେ ଭାରତ ପ୍ରଥମ ଦୁଇଟି ମ୍ୟାଚ୍‌ରେ ପରାଜିତ ହେବା ପରେ ଯେଉଁ ହତାଶା ପରିସ୍ଥିତି ସୃଷ୍ଟି ହୋଇଥିଲା ଖେଳପ୍ରେମୀମାନଙ୍କ ମନର ସେ କଥା ଏଯାବତ୍ ଭୁଲି ପାରି ନାହିଁ ।

ନୈରାଶ୍ୟର ମେଘ ଭର୍ତ୍ତି ହୋଇଗଲା ଭାରତର ଆକାଶରେ ଯେମିତି । ଠିକ୍ ଏଇପରି ପରିସ୍ଥିତି ସାଙ୍ଗକୁ ଭାରତର ସବୁଠୁ ପ୍ରିୟ ଖେଳାଳି ସଚିନ ତେନ୍ଦୁଲକରଙ୍କ ପତୃ ବିୟୋଗଜନିତ ଦୁଃଖ ଓ ଉକ୍ତ ଖେଳମାନଙ୍କରେ ଯୋଗ ନଦେଇ ପାରିବା ଘଟଣା ବିଶ୍ୱର ଅଧିକାଂଶ ପତ୍ରପତ୍ରିକା ଉଲ୍ଲେଖ କଲେ । ସଚିନ୍‌ଙ୍କ ଆଡ଼କୁ ଯେପରି ଶହେକୋଟି ଜନତା ଚାତକ ପରି ଚାହିଁ ରହିଲେ । ଭାରତୀୟମାନଙ୍କ ହତାଶା, ଦୁଃଖ ଏବଂ ଗ୍ଲାନିର ସଂଗୀତ ଯେପରି ସେ ନିଃଶବ୍ଦରେ ଶୁଣି ପାରିଲେ ଏବଂ ସେଇଥିପାଇଁ ସେ ପିତାଙ୍କ ବିୟୋଗ ଯୋଗୁଁ ଦୀର୍ଘ ତିନି ରାତି ବିନିଦ୍ର ଥିଲେ ବି ତୃତୀୟ ମ୍ୟାଚ୍ ଖେଳିବା ପାଇଁ ପୁନଶ୍ଚ ଭାରତରୁ ଯାଇ ଇଂଲଣ୍ଡରେ ପହଞ୍ଚିଲେ । ପରବର୍ତ୍ତୀ ସମୟରେ ଭାରତକୁ ଏକ ଦୁର୍ଦ୍ଦିନରୁ ରକ୍ଷା କରିବା ସହ ନିଜେ ଶହେଚାଳିଶ ରନ୍ କରିବା ଆଜି କେବଳ ଇତିହାସ ନୁହେଁ, ବିସ୍ମୟ ଘଟଣା ଭାବେ ମାନସ ପଟରେ ଲିପିବଦ୍ଧ ହୋଇଛି ।

ସଚିନ୍‌ଙ୍କୁ ଜଣେ ଖେଳାଳି ଭାବେ ନୁହେଁ ବରଂ ଜଣେ ଦକ୍ଷ ବ୍ୟକ୍ତିତ୍ୱ ଭାବେ ଏ ଲେଖକ ସେତେବେଳେ ଲକ୍ଷ୍ୟ କରିଛି । ସମସ୍ତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଜଣେ ବ୍ୟକ୍ତି କିପରି ଅବିଚଳିତ ଭାବେ ନିଜ ଲକ୍ଷ୍ୟ ହାସଲ କରିପାରିଛି - ତାହାହିଁ ସେ ପ୍ରମାଣିତ କରିଥିଲେ ତାଙ୍କ ଖେଳରେ । ବ୍ୟକ୍ତିଗତ ଦୁଃଖକୁତୁଚ୍ଛ କରି ସମଗ୍ର ଜାତିର ମହତ୍ ରକ୍ଷା କରିବା ଉଦ୍ଦେଶ୍ୟରେ ସେ ଯେଉଁ ଭୂମିକା ନେଲେ ତାହା ତାଙ୍କୁ ଜଣେ ରାଜପୁତ୍ରର ସମ୍ମାନ ଦେଇଛି । କିନ୍ତୁ ହାୟ ଆଜିର ଯୁବ ନେତା (ରାଜନୈତିକ ସ୍ତରର)ମାନେ ଅନ୍ତତଃ ସଚିନ୍‌ଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଦେଶର ସେବା କରିବା ସହ ଜନତାର ହୃଦୟରେ ସ୍ଥାନ ପାଆନ୍ତେ ? ପୁରୁଣା ନେତାଙ୍କ ପରି ସେମାନେବି ନିଜ ସ୍ୱାର୍ଥ ନେଇ ଖୁବ୍ ବ୍ୟସ୍ତ । ତାହାହିଁ ଦୁଃଖ ।

ଜଣେ ନେତା କିପରି ବ୍ୟବହାର କରିବା ଉଚିତ୍-ଏ ସଂପର୍କରେ ଗପଟିଏ ମନେପଡ଼େ । ମୁଖ୍ୟତଃ ଏହା ସେମାନଙ୍କ ଯୋଗ୍ୟତା ପ୍ରତି ଅଙ୍ଗୁଳି ନର୍ଦ୍ଦେଶ କରେ । କଥାଟି ଏଇପରି : ଥରେ ଜଣେ ରାଜା ନିଜର ପୁତ୍ରଙ୍କୁ ରାଜ୍ୟର ସବୁଠାରୁ ଯୋଗ୍ୟ ତଥା ଜ୍ଞାନୀ ଗୁରୁଙ୍କ ପାଖକୁ ପଠାଇଲେ ଉତ୍ତମ ଶିକ୍ଷା ପ୍ରାପ୍ତି ଉଦ୍ଦେଶ୍ୟରେ । ଗୁରୁ ରାଜପୁତ୍ରଙ୍କୁ ଗୋଟିଏ ସର୍ତ୍ତରେ ତାଙ୍କର ଶିଷ୍ୟ ଭାବେ ଗ୍ରହଣ କରିବାକୁ ରାଜି ହେଲେ । ସର୍ତ୍ତଟି ଥିଲା ଏଇପରି : ଶିକ୍ଷା ଗ୍ରହଣ ସମାପ୍ତି ପରେ ରାଜପୁତ୍ରଙ୍କର ଜ୍ଞାନର ପରୀକ୍ଷା ନିଆଯିବ ଏବଂ ସେ ଯଦି କ୍ରମାଗତ ଦୁଇଥର ଏଇ

ପରୀକ୍ଷାରେ ବିଫଳ ହୁଅନ୍ତି ତେବେ ସେ କଦାପି ଦେଶର ରାଜା ହୋଇପାରିବେ ନାହିଁ । ରାଜା ପୁତ୍ରର ଶିକ୍ଷା ନେଇ ଏଇ ସର୍ତ୍ତରେ ରାଜି ହେଲେ ଗୁରୁଙ୍କ ସାମ୍ନାରେ । ଦୀର୍ଘ ପନ୍ଦର ବର୍ଷ ଧରି ଗୁରୁଙ୍କ ପାଖରେ ରହି ରାଜପୁତ୍ର ବିଦ୍ୟା ଓ କଳା ଆୟତ୍ତ କଲେ । ଶିକ୍ଷା ସମାପ୍ତ ହେବା ପରେ ଗୁରୁ ତାଙ୍କର ଶିଷ୍ୟଙ୍କୁ ଆଦେଶ ଦେଲେ,

: ତୁମେ ଗୋଟିଏ ଦିନ ପାଇଁ ଜଙ୍ଗଲ ଭିତରକୁ ଯିବ ଏବଂ ସେଠାରେ ତୁମେ ଶୁଣିଥିବା ସମସ୍ତ ଧ୍ୱନି ସଂପର୍କରେ ଆସି ମୋତେ କହିବ ।'

: 'ଯଥା ଆଜ୍ଞା, ଗୁରୁଦେବ' ବିନମ୍ର ସ୍ୱରରେ ଏକଥା କହି ସାରି ରାଜପୁତ୍ର ସେଠାରୁ ବିଦାୟ ନେଇ ଜଙ୍ଗଲ ଅଭିମୁଖେ ଯାତ୍ରା କଲେ ।

ଜଙ୍ଗଲ ଭିତରେ ଦିନଟିଏ କଟାଇବା ପରେ ଫେରି ଆସି ରାଜପୁତ୍ର, ସମବେତ ସଭାସଦ୍ ବର୍ଗ ଓ ଗୁରୁଙ୍କ ସମ୍ମୁଖରେ ଜଙ୍ଗଲରେ ଶୁଣିଥିବା ଧ୍ୱନିମାନଙ୍କର ଟିକିନିକି ବିବରଣୀ ସମସ୍ତଙ୍କ ସାମ୍ନାରେ ଦେଲେ । ସେଇ ବିବରଣୀରେ ଥିଲା ଝରଣାର କଳକଳ ନାଦ, ବିଜୁଳିର ଗର୍ଜନ, ସିଂହର ରଡ଼ି ଓ ପତ୍ରମାନଙ୍କର ଖଡ଼ଖଡ଼ । ସମବେତ ସଭାସଦ୍ ବର୍ଗ ଓ ରାଜା, ରାଜପୁତ୍ରଙ୍କ ବିଚକ୍ଷଣ ବର୍ଣ୍ଣନାରେ ଅତ୍ୟନ୍ତ ଉଲ୍ଲସିତ ହୋଇ ଉଠିଲେ । ମାତ୍ର ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରିଦେଇ ଗୁରୁ ତାଙ୍କର ଛାତ୍ରଙ୍କୁ ପରୀକ୍ଷାରେ ବିଫଳ ହୋଇଥିବା ଘୋଷଣା କଲେ ।

ସର୍ତ୍ତ ଅନୁଯାୟୀ ଦ୍ୱିତୀୟ ତଥା ଶେଷ ଥର ପରୀକ୍ଷା କରିବା ଲାଗି ଗୁରୁ ରାଜପୁତ୍ରଙ୍କ ଜଙ୍ଗଲ ଭିତରେ ବର୍ଷଟିଏ ରହି ପୁନଶ୍ଚ ଧ୍ୱନି ସବୁ ସଂଗ୍ରହ କରିବା ଲାଗି ନିର୍ଦ୍ଦେଶ ଦେଲେ । ଅଗତ୍ୟା ଗୁରୁଙ୍କ ନିର୍ଦ୍ଦେଶ ମାନି ରାଜପୁତ୍ର ଜଙ୍ଗଲକୁ ଗଲେ ଏବଂ ସେଠି ଧ୍ୟାନମଗ୍ନ ରହି ସମସ୍ତ ଧ୍ୱନି ଶୁଣିବାକୁ ଚେଷ୍ଟା କଲେ । ବର୍ଷକ ପରେ ପୁନଶ୍ଚ ନିର୍ଦ୍ଧାରିତ ସମୟରେ ରାଜପୁତ୍ରଙ୍କ ପରୀକ୍ଷା ନିଆଗଲା, ଏଥର ରାଜପୁତ୍ର ସଭାସଦ୍ ବର୍ଗଙ୍କ ସାମ୍ନାରେ ଧୀର ତଥା ଉଦାର କଣ୍ଠରେ କହିଲେ ଯେ ସେ ସିଂହର ସନ୍ତ୍ରାନ୍ତପଣ, ପୃଥିବୀ ମାତାର ଆର୍ତ୍ତ, ମେଷ ଶାବକର ନିରୀହତା ଏବଂ ଘରଚଟିଆ ଚଢ଼େଇର ଖୁସି ଅନୁଭବ କରି ପାରିଛନ୍ତି । ତତ୍‌କ୍ଷଣାତ୍ ଗୁରୁ ରାଜପୁତ୍ରଙ୍କୁ ପରୀକ୍ଷାରେ ସଫଳ ହୋଇଥିବା ଘୋଷଣା କଲେ । କାରଣ ଗୁରୁ ରାଜପୁତ୍ରଙ୍କୁ ଏପରି ଗୁଣରେ ଅଭିଷିକ୍ତ ହେବାକୁ ଚାହୁଁଥିଲେ, ଯାହା ପ୍ରଜାମାନଙ୍କ ପାଳନ ପାଇଁ ଜଣେ ରାଜାର ମୌଳିକ ଗୁଣ ବୋଲି ଧରାଯାଇପାରିବ ।

ବିଶ୍ୱ କ୍ରିକେଟ୍ ଖେଳ ସମୟରେ ଭାରତୀୟଙ୍କ ଅସହାୟତାର ସ୍ୱର ଶୁଣି ପାରିଥିବା ସଚିନ୍ ତେନ୍ଦୁଲକର କିମ୍ବା ଜଙ୍ଗଲ ପାଖରୁ ଶିଖି ପାରିଥିବା ସମ୍ବେଦନଶୀଳ ରାଜପୁତ୍ରଙ୍କ ପରି, ଆଜିର ନେତୃବର୍ଗ କ'ଣ କୋଟିକୋଟି ଆର୍ତ୍ତ ଭାରତୀୟଙ୍କ ଦୁଃଖର ପରିଭାଷା ଓ ନିଃଶବ୍ଦ ଧ୍ୱନି ଶୁଣି ପାରିବେ ?



# ଟେର

ଏହାପରେ ଇମିଗ୍ରେସନ କାଉଣ୍ଟରର ପାଳି, ସେଠି ଏଚ.ସି. ଓଝା ନାମଧେୟ ଯୁବକ ଜଣକ ବସିଥା'ନ୍ତି । ମୋର ପାସ୍‌ପୋର୍ଟକୁ ହାତରେ ଥରେ ଦିଥର ହଲେଇ ପଚାରିଲେ : ଆପଣ କହିଁକି ଆମେରିକା ଯାଉଛନ୍ତି ?' ମୁଁ କହିଲି, ମୁଁ ଜଣେ ରାଇଟର୍, ମୋତେ ସେମାନେ ଆମନ୍ତ୍ରଣ କରିଥିବାରୁ ମୁଁ ଯାଉଛି । ଶ୍ରୀ ଓଝା ପୁଣି ପଚାରିଲେ, ରାଇଟର ? ରାଇଟର କା ମତଲବ୍ ? ମୁଁ ଆକାଶରୁ ତଳକୁ ଖସି ପଡ଼ିବି ଅବା : ଏଇ ଲେଖକ ଗୋଷ୍ଠୀଟି କ'ଣ ସବୁଠୁ ଓ ସବୁବେଳେ ଗୋଟେ ଅବୁଝା ଗୋଷ୍ଠୀ । ସେ ତାଙ୍କ ପ୍ରଶ୍ନକୁ ଦୋହରେଇଲେ, ଆପଣ ଖାଲି ଲେଖାଲେଖି କରିନ୍ତି ନା ଆଉ କ'ଣ କରନ୍ତି ? ତାଙ୍କ ବିଚାରରେ ଲେଖା ଲେଖିବା ଯେବିତି ଟିଉସନ୍ କଲା ଭଳି ଗୋଟେ ପାର୍ଟ ଟାଇମ୍ ସଉକି । ମୋର ଶରତ ଚନ୍ଦ୍ରଙ୍କ ଜୀବନରୁ ଗୋଟେ କଥା ମନେ ପଡ଼ିଲା । ନିଜେ ଶରତ ଚନ୍ଦ୍ର (ବଙ୍ଗଳା ଭାଷାରେ ବିଖ୍ୟାତ ଲେଖକ) ତାଙ୍କର ଖଣ୍ଡିଏ ବହିରେ ଏକଥା ଲେଖି ଯାଇଛନ୍ତି । ଘଟଣାଟି ଏଇପରି-ଦିନେ ଶରତଚନ୍ଦ୍ର ତାଙ୍କ ଘର ଅଗଣାରେ ବସିଥାଆନ୍ତି । ସେତେବେଳକୁ ତାଙ୍କର ବେଶ୍ କେତେ ଖଣ୍ଡ ଉପନ୍ୟାସ ବାହାରି ତାଙ୍କୁ ଖ୍ୟାତି ଓ ସମ୍ମାନ ଆଣି ଦେଇସାରିଲାଣି । ଦାଣ୍ଡ ପଟେ ପଡ଼ୋଶିନୀ ବିଧବା ବ୍ରାହ୍ମଣୀ ଧାନ ଶୁଖଉଥାନ୍ତି ଏବଂ ଚାଟଶାଳୀକୁ ଯିବାକୁ ଅନିଚ୍ଛୁକ ତାଙ୍କର ନାତିଟିକୁ ପାଠ ପଢ଼ି ଦିପୋଟି ନ ହେଲୁ ନାହିଁ, ପ୍ରଥମ ପାଠଟା ସାରିଦେଲେ ଅନ୍ତତଃ ଏଇ ଶରତ୍ ଦା (ଶରତ ଚନ୍ଦ୍ର) ପରି ଦି ଚାରିଖଣ୍ଡ ବହି ଲେଖି ତୋ' ପେଟ ତ ପୋଷି ପାରିବୁ । ଶରତ ଚନ୍ଦ୍ର ତାଙ୍କ ବହିରେ ଲେଖିଛନ୍ତି, ଲେଖକମାନଙ୍କ ପ୍ରତି ସମାଜର ଦୃଷ୍ଟି ଭଙ୍ଗୀ ସବୁବେଳେ ଏୟା, ମୋ କଥା ଛାଡ଼ନ୍ତୁ, ଯେଉଁମାନେ ଜୀବନରେପଚିଶ ତିରିଶ ବର୍ଷ ନିରୋଳା ସାହିତ୍ୟ ସାଧନାରେବିତେଇ ଦେଲେଣି ସେମାନଙ୍କୁ ମଧ୍ୟ ଏହିପ୍ରକାରେ ଅସ୍ୱସ୍ତିକର ପ୍ରଶ୍ନର ସମ୍ମୁଖୀନ ହେବାକୁ ପଡ଼େ । ଲୋକେ ପଚାରନ୍ତି, ଆପଣ କ'ଣ କରୁଛନ୍ତି ? ସେମାନେ ଧରନ୍ତୁ ଉତ୍ତର ଦେଲେ, 'ମୁଁ ଗପ ଉପନ୍ୟାସ ଲେଖେ । ପ୍ରଶ୍ନକର୍ତ୍ତା ପୁଣି ପଚାରିବେ,'ଗପ ଉପନ୍ୟାସ ଲେଖନ୍ତି ଯେ, ମାତ୍ର କାମ କ'ଣ କରନ୍ତି ? ଅର୍ଥାତ୍ ଏସବୁ ଲେଖିବା କାମ ନୁହେଁ । ଆପଣ କହିବେ ମୁଁ ପଶୁ ପାଳନ ବିଭାଗର ଡାଏରୀ ଡେସ୍‌ପାଚ୍ କ୍ଲର୍କ ଅଛି, ସଙ୍ଗେ ସଙ୍ଗେ ତାଙ୍କର ମୁହଁ ଠିକଣା ଉତ୍ତର ପାଇଥିବାର ସନ୍ତୋଷରେ ଉଜ୍ଜ୍ୱଳ ହୋଇ ଉଠିବ ।

ଉପରୋକ୍ତ ଉଦ୍ଧୃତାଂଶଟି ହେଉଛି ଗାଳ୍ପିକ ତଥା .... ବନ୍ଧୁ ଗୌରହରି ଦାସଙ୍କ ରଚିତ ଭ୍ରମଣ ପୁସ୍ତକ 'ପ୍ରଥମ ପ୍ରବାସ'ର ଦ୍ୱିତୀୟ ପରିଚ୍ଛଦର କିଛି ଅଂଶ, ବେଶ୍ ସୁନ୍ଦର ଭାବେ ସେ

ତାଙ୍କର ଅଭିଜ୍ଞତା ଓ ଅନୁଭବକୁ ପାଠକ ସାମ୍ନାରେ ରଖିଛନ୍ତି । ଚିତ୍ରଣଟି ନିଛକ୍ ବାସ୍ତବ, ଖାସ୍ ସେଇ କାରଣରୁ ଆଜି ଓଡ଼ିଶାର ଜଣେ କବି ପାଇଁ କେବଳ କବିତା ରଚନା କରି ଜୀବନ ଯାପନ କରିବା ଗୋଟେ ଦୁଃସ୍ୱପ୍ନ ଛଡ଼ା କ'ଣ ହୋଇପାରେ ଆଉ ? କେବଳ କବିତା କାହିଁକି, ଗଳ୍ପ, ଉପନ୍ୟାସ ରଚନାରେ ବ୍ୟସ୍ତ ଥିବା ଲେଖକଟିର ମଧ୍ୟ ଅନୁରୂପ ଅବସ୍ଥା ।

ଓଡ଼ିଶାରେ ସାହିତ୍ୟକୁ ବୃତ୍ତି କରି ଜଣେ କାହିଁକି ସ୍ୱାବଲମ୍ବୀ ହୋଇପାରିବ ନାହିଁ ବୋଲି ପ୍ରାୟ ପଚିଶି ବର୍ଷ ତଳେ ଗୋଟିଏ ଆଲୋଚନା ଚକ୍ରରେ ଭାଗ ନେଇ ଏ ଲେଖକ ଖୁବ୍ ଅଡୁଆ ପରିସ୍ଥିତିରେ ପଡ଼ିଥିଲା ସେତେବେଳେ । ଛାତ୍ର ଜୀବନର କଥା । ତୃତୀୟ ବାର୍ଷିକ ଛାତ୍ରମାନଙ୍କୁ ସ୍ୱାଗତ କରିବା ଉଦ୍ଦେଶ୍ୟରେ ଚତୁର୍ଥ ଅର୍ଥାତ୍ ଶେଷ ବର୍ଷର ଛାତ୍ରମାନେ ଏକ ସଭାର ଆୟୋଜନ କରିଥା'ନ୍ତି ମହାବିଦ୍ୟାଳୟର ଏକ ପ୍ରକୋଷ୍ଠରେ । ସେଠାରେ ବିଭାଗୀୟ ମୁଖ୍ୟ ଓ ଅନ୍ୟାନ୍ୟ ଅଧ୍ୟାପକଙ୍କ ବ୍ୟତୀତ ଉପସ୍ଥିତ ଥା'ନ୍ତି ମହାବିଦ୍ୟାଳୟର ଅଧ୍ୟକ୍ଷ । ସ୍ୱାଗତ ସଭାରେ ଏଇ ପ୍ରସଙ୍ଗଟି ଯଦିଓ ଖାପଛଡ଼ା ଜଣାଯାଉଥିଲା ତଥାପି ସବୁ ବକ୍ତା ଉଣା ଅଧିକେ ଏଇ ପ୍ରଶ୍ନଟି ଉପରେ ଆଲୋକପାତ କରି ଚାଲିଥା'ନ୍ତି । କିଛି ସମୟ ପରେ ଏ ଲେଖକର ପାଳି ପଡ଼ିଲା କିଛି କହିବାକୁ । ପୂର୍ବରୁ ବକ୍ତାମାନେ ଓଡ଼ିଶାର ପାଠକ ଦାରିଦ୍ର୍ୟର କଷାଘାତରେ ପୀଡ଼ିତ ଥିବାରୁ ପତ୍ରିକାଟିଏ କିଣିବାକୁ ସକ୍ଷମ ହେଉନାହାଁନ୍ତି ବୋଲି କହିଲେ । ଫଳରେ ବହି କିମ୍ୱା ପତ୍ରିକା ଆଶାନୁରୂପ ହୋଇପାରୁନି ବୋଲି କହିଲେ । ପତ୍ରିକା କିମ୍ୱା ବହି ବିକ୍ରି ନହେଲେ ଲେଖକକୁ ପାରିଶ୍ରମିକ (ରୟାଲିଟି ?) ଦେବ କିଏ ? ଭାଷଣ ଦେବାକୁ ଯାଇ ଯୁକ୍ତି କଲି : ଆମେ ଏ କଥା କହି ଅସଲ ସମସ୍ୟା ପାଖରୁ ଦୂରେଇ ଯାଉଛୁ । ଓଡ଼ିଶାରେ ଦାରିଦ୍ର୍ୟ ଅଛି । ଠିକ୍ ସେଇପରି ଭାରତର ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ଦାରିଦ୍ର୍ୟତା ଅଛି । ଆମର ପଡ଼ୋଶୀ ପ୍ରଦେଶ ପଶ୍ଚିମବଙ୍ଗଳାର ଆର୍ଥିକ ଅବସ୍ଥା ମଧ୍ୟ ଏତେ ସ୍ୱଚ୍ଛଳ ନୁହେଁ । ମାତ୍ର ସେମାନଙ୍କର ନିଜ ଭାଷା ଓ ଜାତିକୁ ନେଇ ସ୍ୱାଭିମାନ ଅଛି, ଯାହା ଆମ ପାଖରେ ନାହିଁ । ଆମ ପାଖରେ ସେପ୍ରକାର ମନୋଭାବ ମଧ୍ୟ ନାହିଁ । ସେତେବେଳେ ମୋର ଯୁକ୍ତି ଶୁଣି ଅନେକ ବନ୍ଧୁ ଓ ଅଧ୍ୟାପକ ନାକ ଟେକିଥିଲେ । ମାତ୍ର ମୁଁ ଭାବୁଛି, ଏବେବି ସେଇ ପରିସ୍ଥିତି ରହିଛି ଓ ପଚିଶି ବର୍ଷ ପରେ ମଧ୍ୟ ଏ ଅବସ୍ଥା ଆହୁରି ଖରାପ ଆଡ଼କୁ ଗତି କରିବ ବୋଲି ଆଶଙ୍କା ହେଉଛି ।

ଗୋଟିଏ ଉଦାହରଣ ଦିଆଯାଇପାରେ । ଏବେ ଓଡ଼ିଶାର ବିଭିନ୍ନ ସ୍ଥାନରେ ଛତୁ ଫୁଟିଲା ପରି ଇଂରାଜୀ ମିଡ଼ିୟମ୍ ସ୍କୁଲମାନ ପ୍ରତିଷ୍ଠା ହୋଇଛି । ନିଜ ପିଲାର ଭବିଷ୍ୟତକୁ ସୁନ୍ଦର କରିବା ଆଶାରେ ଅନେକ ବାପା, ମା' ସେଇ ବିଦ୍ୟାଳୟମାନଙ୍କରେ ପିଲାଙ୍କୁ ଭର୍ତ୍ତି କରୁଛନ୍ତି । ସ୍କୁଲ ଦରମା ଓ ଟ୍ୟୁସନ୍ ମାଷ୍ଟ୍ରଙ୍କ ବାବଦରେ ସେମାନେ ଶହଶହ ଟଙ୍କା ଖର୍ଚ୍ଚ କରିବାକୁ ପଛାଉ ନାହାଁନ୍ତି । ମାତ୍ର ସେମାନଙ୍କ ଭିତରୁ କେତେଜଣ ନିଜ ପିଲା ପାଇଁ ପ୍ରତିମାସରେ ଓଡ଼ିଆ ପତ୍ରିକାଟିଏ କିଣନ୍ତି ? ଯଦିବା କେହି କେହି କିଣନ୍ତି-ସେମାନଙ୍କ ସଂଖ୍ୟା କେତେ ? ନିଜର

ଐତିହ୍ୟ ଓ ପରମ୍ପରାକୁ ନିଜ ପିଲାଙ୍କୁ ପରିଚିତ କରାଇବା ଲାଗି ଆମେ କି ଉଦ୍ୟମ କରୁଛୁ ?

ଏଥର ଆସନ୍ତୁ 'ସ୍ୱଭିମାନ' ପ୍ରସଙ୍ଗକୁ । ଓଡ଼ିଶରେ ଏବେ ୧୨୪୦ଟି ମହାବିଦ୍ୟାଳୟ ଓ ୬ଟି ବିଶ୍ୱବିଦ୍ୟାଳୟ । ସବୁଠି ପ୍ରାୟତଃ ଓଡ଼ିଆ ବିଭାଗ ଓ ଛାତ୍ର ତଥା ଅଧ୍ୟାପକ ରହିଛନ୍ତି । ମାତ୍ର ସେମାନଙ୍କ ଭିତରୁ କେତେଜଣ ଛାତ୍ର ତଥା ଅଧ୍ୟାପକ ଓଡ଼ିଆ ବହି କିମ୍ବା ପତ୍ରପତ୍ରିକା କିଣି ପଢ଼ନ୍ତି ?

ବହି ଅର୍ଥାତ୍ ସେମାନଙ୍କ ପାଠ୍ୟ ପୁସ୍ତକ ସଂପର୍କୀୟ ବହିକୁ ମୁଁ ଏଠି ବିଚାରକୁ ନେଉନାହିଁ । ଏହା କ'ଣ ଆମ ସ୍ୱାଭିମାନର ରୁଗ୍‌ଣତା ସଂପର୍କରେ ସୂଚନା ଦିଏ ନାହିଁ ? ବେଳେବେଳେ ମନେ ହୁଏ, ଏହି ରୁଗ୍‌ଣତା ପାଇଁ ଲେଖକ ଭାବେ ପରିଚୟ ଦେବାରେ ସେ ଭୟ ଅଥବା ଲଜ୍ଜା ଅନୁଭବ କରେ । ସେଇଥିପାଇଁ, ପ୍ରକାଶିତ ଲେଖା ତଳେ ବାସଗୃହର ଠିକଣା ନଦେଇ, ଶାସନ ସଚିବ କିମ୍ବା ଅଧ୍ୟାପକ, ଓକିଲର ଠିକଣା ଇତ୍ୟାଦି ଦେବାକୁ ପସନ୍ଦ କରେ ।

ସମସ୍ତେ ମିଶି ଯେପରି ଆମରି ଚେରଟା ଉପାଡ଼ି ଦେବାକୁ ଚେଷ୍ଟା କରୁଛୁ । ନିଜ ଚେରକୁ ଛାଡ଼ି ଅନ୍ୟ ଉପରେ ନିର୍ଭର କରି ଅଥବା ପରାଙ୍ଗଜୀବୀ ହୋଇ କୌଣସି ସାହିତ୍ୟ ଅଥବା ସମାଜ ତିଷ୍ଠି ପାରିବ ନାହିଁ । ଏକଥା ଆଉ କେହି ନହେଲେ ବି ଲେଖକଟି ପ୍ରଥମେ ମନେରଖିବା ଉଚିତ୍ । ତା' ନହେଲେ ବିଶିଷ୍ଟ ଦାର୍ଶନିକ ଜ୍ୟାଁ ପଲ୍ ସର୍ତ୍ତଙ୍କ ସହଧର୍ମିଣୀ ତଥା ପ୍ରଖ୍ୟାତ୍ ଔପନ୍ୟାସିକା ସାଇମନ୍ ଡି ବୁଭୁଆଙ୍କ ତାଚ୍ଛଲ୍ୟ ଉକ୍ତିଟିକୁ ଏଠି ଦୋହରାଇବାକୁ ପଡ଼ିବ : 'ଗୋଟେ ନାରୀର ସବୁଠୁ ବଡ଼ ଦୁର୍ଗତି ଆସେ ଯେତେବେଳେ ସେ କୌଣସି ଲେଖକର ପ୍ରେମରେ ପଡ଼ିଯାଏ' (The greatest Catastrophy of a woman is to be loved by a Writer)

ଲେଖକକୁ ଭଲ ପାଇ ତା'ର ସମାଜ ହନ୍ତସନ୍ତ ନହେଉ, ଆସନ୍ତୁ, ଆଜି ଏତିକି କାମନା କରିବା ।



# ହଜି ଯାଇଥିବା କ୍ୟାମେରାଟି ସମ୍ପର୍କରେ

ଏବେ ଖବରକାଗଜମାନଙ୍କରେ କେବଳ ଏଭେରେଷ୍ଟକୁ ନେଇ ଅନେକ ସମ୍ବାଦ । ପନ୍ଦରବର୍ଷର ନେପାଳୀ କିଶୋର ଅରବିନ ତିମିଲସିନା (Arbin Timilsina) ଙ୍କ ସ୍ୱପ୍ନ ହେଉଚି ଏଭେରେଷ୍ଟ ଶୃଙ୍ଗାରୋହଣ କରି ନୂତନ ରେକର୍ଡ ପ୍ରତିଷ୍ଠା କରିବେ । ମାତ୍ର ଦଶବର୍ଷ ବୟସରେ ସେ ଏ ସ୍ୱପ୍ନ ଦେଖିଥିଲେ । ତିମିଲସିନାଙ୍କ ଏଇ ଯାତ୍ରା ପାଇଁ ଅନେକଗୁଡ଼ିଏ ଶିକ୍ଷାନୁଷ୍ଠାନ ଏବଂ ତାଙ୍କ ସ୍କୁଲ କର୍ତ୍ତୃପକ୍ଷ ସହାୟତା କରୁଥିବାର ସମ୍ବାଦ ଚାରିଆଡେ ପ୍ରଚାରିତ ହୋଇଥିଲା ମାର୍ଚ୍ଚମାସରେ । ତାଙ୍କର ଦୁଃସାହସିକତା ପାଇଁ ନେପାଳ ସରକାର ପର୍ବତାରୋହଣ ଲାଗି ଜମା କରୁଥିବା ପଚାଶ ହଜାର ଡଲାର ମୁଦ୍ରା ମଧ୍ୟ ଛାଡ କରି ଦେଇଛନ୍ତି । ପ୍ରକାଶଥାଉକି ଏଯାବତ୍ ପ୍ରାୟ ସାତଶହ ପଚାଶ ଜଣ ଶୃଙ୍ଗାରୋହଣ କରି ପାରିଥିବା ସମୟରେ ପ୍ରାୟ ଦେଢ଼ଶହ ଜଣ ମୃତ୍ୟୁର ସାମ୍ନା କରିଛନ୍ତି ।

ସବୁ ସ୍ୱପ୍ନ ସଫଳ ହୁଏ ନାହିଁ । ସବୁ ପର୍ବତାରୋହଣକାରୀ ଏଭେରେଷ୍ଟ ଶୃଙ୍ଗର ଶିଖରରେ ପହଞ୍ଚି ପାରିନ୍ତି ନାହିଁ । ତିନିଥର ଶୃଙ୍ଗ ଶିଖରରେ ପହଞ୍ଚିବାକୁ ଚେଷ୍ଟା କରି ବିଫଳ ହୋଇଥିବା ଚାର୍ଲସ ୱାରେନ (Charles Warren)ଙ୍କର ନିକଟରେ ମଧ୍ୟ ବୟାନବେ ବର୍ଷରେ ମୃତ୍ୟୁ ହୋଇଛି । ପେଶାରେ ଜଣେ ଡାକ୍ତର ଥିଲେ ବି ନିଶା ତାଙ୍କର ପର୍ବତାରୋହଣ ଥିଲା ଏବଂ ଶୃଙ୍ଗାରୋହଣ ପରେ ତେନଜିଙ୍ଗ ନରଗେ ବ୍ରିଟେନ ଯିବା ପରେ ୱାରେନଙ୍କ ବାସଭବନରେ ରହୁଥିଲେ । ମାତ୍ର ଏଭେରେଷ୍ଟ ଶୃଙ୍ଗର ଶିଖରରେ ନ ପହଞ୍ଚି ପାରି ମଧ୍ୟ ୱାରେନ ଖୁବ୍ ଖ୍ୟାତି ଅର୍ଜନ କରି ପାରିଥିଲେ ।

ଏବେ କାଠମାଣ୍ଡୁର ପର୍ବତାରୋହଣକାରୀ ବିଶ୍ୱର ସର୍ବୋଚ୍ଚ ଶିଖରରେ ପହଞ୍ଚିବା ସହ ସେଠାରେ କେଡିଏ ଘଣ୍ଟା ଚବିଶ ମିନିଟ ରହି ପାରିବାର ବିଶ୍ୱରେକର୍ଡ ପ୍ରତିଷ୍ଠା କରିପାରିଛନ୍ତି । ଏଠି ମନେ ରଖିବାକୁ ହେବ ୮୮୪୮ ମିଟର ଉଚ୍ଚତା ବିଶିଷ୍ଟ ଏଭେରେଷ୍ଟ ଶୃଙ୍ଗର ଶିଖରରେ ଅମ୍ଳଜାନର ଅଭାବ ଓ ଘନ ଘନ ପାଗ ପରିବର୍ତ୍ତନ ହିଁ ଆରୋହଣକାରୀଙ୍କୁ ବେଶି ସମୟ କଟାଇବାର ସୁଯୋଗରୁ ବଞ୍ଚିତ କରିଥାଏ । କିନ୍ତୁ ଏଇ ବିସ୍ମୟ ଆରୋହଣକାରୀ ବାବୁ ଛିରି (Babu Chhiri) ଏହାକୁ ସମ୍ଭବ କରି ପାରିଛନ୍ତି ।

୧୯୫୩ ମସିହା ମେ' ମାସ ଅଣତିରିଶ ତାରିଖ ଦିନ ପ୍ରଥମଥର ପାଇଁ ଏଭେରେଷ୍ଟ ଶୃଙ୍ଗର ଶିଖରରେ ପାଦ ଥାପିଥିବା ସାର ଏଡମଣ୍ଡ ହିଲାରୀ ଏବଂ ତେନଜିଙ୍ଗ ନର୍ଗେ ଏଇ ଶିଖର ଉପରେ ମାତ୍ର ପନ୍ଦରମିନିଟ୍ ରହି ପାରିଥିଲେ ।

ସବୁଠାରୁ ଆଶ୍ଚର୍ଯ୍ୟ ଘଟଣା ହେଉଛି ଏବେ ଏଭେରେଷ୍ଟ ଶୃଙ୍ଗର ଶିଖରରେ ପ୍ରଥମେ କିଏ ପହଞ୍ଚିଥିଲେ ସେ ନେଇ ବିତର୍କ ଆରମ୍ଭ ହୋଇଯାଇଛି । କାରଣ ଏଇ ପର୍ବତ ଦେଶକୁ ୧୯୨୪ ମସିହା ଜୁନ ଆଠ ତାରିଖ ଅପରାହ୍ନରେ ବ୍ରିଟେନର ଜଣେ ସ୍କୁଲ ଶିକ୍ଷକ ଜର୍ଜ ଲେ ମାଲୋରୀ

(George Leigh Malory) ତାଙ୍କର ଜଣେ ସହଯୋଗୀ ତଥା ଅକ୍ସଫୋର୍ଡର ଇଞ୍ଜିନିୟରିଂ ଛାତ୍ର ଆଣ୍ଡ୍ରିୟୁ ଇରଭିନ (Andrew Irvine)ଙ୍କ ସହ ଯାତ୍ରା କରି ଫେରି ନ ଥିଲେ । ଦୀର୍ଘ ପଚସ୍ତରୀ ବର୍ଷ ପରେ ମାଲୋରୀଙ୍କ ଅକ୍ଷତ ଦେହ ଏବେ ଆବିଷ୍କୃତ ହେବା ଫଳରେ ଏଇ ବିବାଦର ସୂତ୍ରପାତ ହୋଇଛି । ଶୃଙ୍ଗର ଶିଖରଠାରୁ ମାତ୍ର ଛଅଶହ ମିଟର ତଳକୁ ମାଲୋରୀଙ୍କ ଶବ ପଡ଼ିଥିବାର ପ୍ରଥମେ ଦେଖିଥିଲେ ଗୋଟିଏ ପର୍ବତାରୋହଣକାରୀ ଦଳର ଜଣେ ସଭ୍ୟ କନରାଡ ଆଙ୍କର (Conrad Anker)ଏବଂ ବରଫ ଭିତରେ ପୋତି ହୋଇ ପଡିଥିବା ଶରୀରର କିଛି ଅଂଶ ସହ ତାଙ୍କ ଅଣ୍ଟାରେ ଗୁଡାଇ ହୋଇଥିବା ନିରାପତ୍ତା ରଜ୍ଜୁଟିକୁ ମଧ ସେ ଉଦ୍ଧାର କରିଥିଲେ ।

''ଆମେ ସମସ୍ତେ ମାଲୋରୀଙ୍କ ବଳିଷ୍ଠ ଚେହେରା ଦେଖିଲୁ । ଏତେବର୍ଷ ପରେ ବି ତାଙ୍କ ଚେହେରାର ଦୀପ୍ତି ଉଦ୍‌ଭାସିତ ହେଉଥିଲା ଆମ ସାମ୍ନାରେ'' କହିଲେ ଓ୍ୱେହାନ । ମାତ୍ର ମାଲୋରୀଙ୍କ ସହଯୋଗୀ ଇରଭିନଙ୍କ ମୃତ ଦେହ ୧୯୩୩ ମସିହାରେ ଉଦ୍ଧାର କରାଯାଇଥିଲା । ମାଲୋରୀଙ୍କ ଶରୀର ଉଦ୍ଧାର କରିବାକୁ ଯାଇ ପର୍ବତାରୋହଣକାରୀମାନେ ତାଙ୍କ ପାଖରେ ଥିବା ପରିବାରର ଏକ ଚିଠି, ଗୋଟିଏ ପକେଟ ଛୁରୀ, ନାମଖୋଦିତ ହୋଇଥିବା ରୁମାଲ ଏବଂ ପର୍ବତ ଶିଖରରୁ ସମୁଦ୍ର ପତ୍ତନ ଉଚ୍ଚତା ମାପିବା ଲାଗି ଉଦ୍ଦିଷ୍ଟ ଏକ ଭଙ୍ଗା ଅଲ୍‌ଟିମିଟର(Altimetre) ପାଇଥିଲେ । ଗୋଟିଏ କଳା ଚଷମା ପାଇବା ପରେ ସେମାନେ ନିଶ୍ଚିତ ହୋଇଯାଇଥିଲେ ଯେ, ମାଲୋରୀ ଶୃଙ୍ଗାବତରଣ କରିବା ବେଳେ ଏଇ ଚଷମା ବ୍ୟବହାର କରିଥିଲେ । ମାଲୋରୀଙ୍କ ପରିବାରର ଅନୁମତି ନେଇ ଆରୋହଣକାରୀମାନେ ତାଙ୍କ ଶରୀରର କିଛି ମାଂସ ନେଇ ଏହାର ଡି.ଏନ.ଏ. (D.N.A) ପରୀକ୍ଷା ମଧ୍ୟ କରି ସାରିଲେଣି । ଏଇ ଆରୋହଣର ବିବରଣୀ ଏବେ ଇଣ୍ଟରନେଟରେ ମଧ୍ୟ ଦେଖିବାକୁ ମିଳୁଛି । ମାତ୍ର ଏବେ ଏଇ ଆରୋହଣକାରୀମାନେ ଗୋଟିଏ କୋଡାକ ପଟେକ କ୍ୟାମେରାର ସନ୍ଧାନରେ ଅଛନ୍ତି : ଯାହା ମାଲୋରୀ ଶୃଙ୍ଗାରୋହଣର ଅବ୍ୟବହିତ ପୂର୍ବରୁ ସାଥିରେ ନେଇ ଯାଇଥିଲେ । ସେମାନେ ଅନୁମାନ କରନ୍ତି, ଯଦି ଏଇ ପକେଟ କ୍ୟାମେରାଟି ମିଳିଯାଏ ତେବେ ଆଶା କରାଯାଉଛି ମାଲୋରୀ ଏବଂ ଇରଭିନ୍ ଶୃଙ୍ଗ ଶିଖରରେ ପହଞ୍ଚିବା ପରେ ସେଠାରେ ଫଟୋ ଉଠାଇଥିବେ । ଏଯାବତ୍ ସେଇ ନେଗେଟିଭଟି ଅକ୍ଷତ ଅବସ୍ଥାରେ ଥିବ । ତାହା ହିଁ ସବୁ ବିବାଦର ସମାଧାନ ଦେଇ ପାରିବ ବୋଲି ଧାରଣା ସୃଷ୍ଟି ହୋଇଛି ।

ତେବେ ଏଇ କ୍ୟାମେରାଟି ନ ପାଇବା ଯାଏ ମାଲୋରୀଙ୍କ ଏଭେରେଷ୍ଟ ଶୃଙ୍ଗ ଶିଖରରେ ପହଞ୍ଚିବା ଘଟଣା, ଟାଇଟାନିକ ବୁଡାଜାହାଜ ଦୁର୍ଘଟଣା ଏବଂ ରବର୍ଟ ଫାଲକନ ସ୍କଟଙ୍କ ଦକ୍ଷିଣ ମେରୁକୁ ଯାତ୍ରା ପରି ରହସ୍ୟାବୃତ୍ତ ହୋଇ ରହିଥିବ ।



# ଗୋଟିଏ ଛେଳିର ମୃତ୍ୟୁ

ଘଟଣାଟି ଘଟିଥିଲା ଜାପାନର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ତାକେସିତାଙ୍କ ଇସ୍ତଫା ଦେବାର ମାତ୍ର ଦିନକ ପରେ ।

ନିଯୁକ୍ତି ଅପବାଦ (Recruitment scandal)ରେ ଅଭିଯୁକ୍ତ ହେବାପରେ ତାକେସିତା ପ୍ରଧାନମନ୍ତ୍ରୀତ୍ୱରୁ ଓହରି ଆସିବାକୁ ସ୍ଥିର କଲେ । ଜାପାନର ରାଜନୈତିକ ଇତିହାସରେ ଏହା ଅବଶ୍ୟ ନୂତନ ଘଟଣା ନଥିଲା । ମାତ୍ର ତାକେସିତାଙ୍କ ଇସ୍ତଫା ଘୋଷଣାର ପରବର୍ତ୍ତୀ ଦିନ ତାଙ୍କର ଘନିଷ୍ଠ ସହଯୋଗୀ ଇହେଇ ଆଓକି (Ihei Aoki) ଆତ୍ମହତ୍ୟା କଲେ ।

ଆଓକିଙ୍କ ମୃତ୍ୟୁ ଜାପାନର ବୁଦ୍ଧିଜୀବୀମହଲରେ ଗହୀର ଉଦ୍‌ବେଗ ସୃଷ୍ଟି କଲା । 'ନିଯୁକ୍ତି ଅପବାଦ'ରେ ଅଭିଯୁକ୍ତ ତାକେସିତାଙ୍କର ସେ ଥିଲେ ବ୍ୟକ୍ତିଗତ ସଚିବ । ରାଜନୈତିକ ମହଲରେ ତାଙ୍କର ଅନେକ ଖ୍ୟାତି ଥିଲା ଏବଂ ତାଙ୍କ ଭଳି ଜଣେ ତୀକ୍ଷ୍ଣ ତଥା ବୁଦ୍ଧିଦୀପ୍ତ ସଚିବଙ୍କୁ ପାଇବା ପାଇଁ ଅନେକ ନେତା ମନେ ମନେ ଝୁରି ହେଉଥିଲେ । ମାତ୍ର ନିଜକୁ ଫାଶିଦେଇ ଏବଂ ହାତର ବଳାକାଟି ସେ ନିଜ ଜୀବନ ପ୍ରଦୀପକୁ ନିର୍ବାପିତ କରିଦେଲେ । ଏହା କିନ୍ତୁ ତାକେସିତା ଅଥବା ତାଙ୍କ ନାମରେ ହୋଇଥିବା ଅଭିଯୋଗର ଆତ୍ମଦହନକୁ ଯେ ନିର୍ବାପିତ କରିପାରିବ ନାହିଁ ସେ କଥା ବିଶ୍ୱକୁ ବୁଝିବାକୁ ଡେରି ହେଲା ନାହିଁ ।

ମାତ୍ର ବଦନାମରେ ଜର୍ଜ୍ଜରିତ ଆଓକି ଆଦୌ ନିଜ ଘରକୁ ଯାଉ ନ ଥିଲେ । ନିଜ ପରିବାରଠୁ ଦୂରରେ ରହି ସେ ଜୀବନର ଶେଷ କେଇଦିନ ଏକ ଅଜ୍ଞାତ ହୋଟେଲରେ ରାତ୍ରୀଯାପନ କରୁଥିଲେ । ସେ ଜାଣିଥିଲେ ଏ କଳଙ୍କ ପାଇଁ ତାଙ୍କ ପରିବାରର ଲୋକେ ତାଙ୍କୁ ଆଦୌ ଉତ୍ସାହିତ କରିବେ ନାହିଁ । ଏକଦା ଏହା ହିଁ ଥିଲା ଭାରତୀୟ ଜନ ସଂସ୍କୃତି ଓ ପରମ୍ପରା । ଦସ୍ୟୁ ରତ୍ନାକରଙ୍କ ଜୀବନରେ ତାହା ହିଁ ଘଟିଥିଲା । ତାଙ୍କ ଜୀବନର ଅପକର୍ମ ପାଇଁ ପରିବାରର କେହି ଯେତେବେଳେ ନିଜକୁ ଅଂଶୀଦାର କଲେ ନାହିଁ, ଦସ୍ୟୁ ରତ୍ନାକରଙ୍କ ଅନୁତାପ ଜନିତ ଜ୍ଞାନୋଦୟ ହିଁ ମହାକାବ୍ୟ ରାମାୟଣ ସୃଷ୍ଟିର ପ୍ରଚ୍ଛଦ କାହାଣୀ ଭାବେ ସ୍ୱୀକୃତି ପାଇଲା । ସୁଖର କଥା, ଆଓକିଙ୍କ ପରି ଅନୁତାପ କରି ଦସ୍ୟୁ ରତ୍ନାକର ଆତ୍ମହତ୍ୟା କରି ନାହାନ୍ତି ।

ଅବଶ୍ୟ ଆଓକିଙ୍କ ଆତ୍ମହତ୍ୟା ଜାପାନୀ ପରମ୍ପରା ଦ୍ୱାରା ସ୍ୱୀକୃତ । ଜଣେ ବିଶ୍ୱସ୍ତ ସେବକ ତା'ର ପ୍ରଭୁଙ୍କୁ ରକ୍ଷା କରିବାକୁ ଯାଇ ଆତ୍ମବଳି ଦେଇଥାଏ । ସେଦିନ ଆଓକିଙ୍କ ମୃତ୍ୟୁରେ ବ୍ୟଥିତ ହୋଇ ତାକେସିତା କହିଥିଲେ, ''ତାଙ୍କର ଏତାଦୃଶ କାର୍ଯ୍ୟ ପାଇଁ ମୁଁ

ଗଭୀର ଭାବେ ଦୁଃଖିତ । ଦୀର୍ଘ ତିରିଶ ବର୍ଷ ହେଲା ଆମେ ସାଙ୍ଗହୋଇ ଗୋଟିଏ ରାସ୍ତାରେ ଚାଲୁଥିଲୁ ।''

ଆତ୍ମହତ୍ୟା କରିବାର ପୂର୍ବଦିନ ହିଁ ଆଓକି ତାଙ୍କ ଅଫିସର ସବୁ ସଦସ୍ୟଙ୍କୁ ଭେଟିଥିଲେ ଏବଂ ତାକେସିତାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ ବିରୁଦ୍ଧରେ ଲଢ଼ିବା ପାଇଁ ପ୍ରତ୍ୟେକଙ୍କୁ ପରାମର୍ଶ ଦେଇଥିଲେ । ଆଓକିଙ୍କ ମୃତ୍ୟୁପରେ 'ନିଯୁକ୍ତି ଅପବାଦ'ର ତଦନ୍ତ କେଉଁ ମୋଡ ନେଲା ଏହା ଏଠି ଅବାନ୍ତର, ମାତ୍ର ଜଣେ ପ୍ରଭୁଭକ୍ତ ସେବକର ଆତ୍ମତ୍ୟାଗ କଥା ମାନବିକ ଇତିହାସର ସଂବେଦନ ପୃଷ୍ଠାରେ ନିଶ୍ଚିତ ଭାବେ ଲେଖା ହୋଇ ରହିବ, ଏଥିରେ ସନ୍ଦେହ ନାହିଁ । ଏହାହିଁ ବୋଧେ ବିଶ୍ୱବାସୀଙ୍କୁ ଜାପାନର ଆଉ ଏକ ଅନୁଭବର ଉପହାର ।

ଭାରତର ଇତିହାସରେ ଅନୁରୂପ ଭାବେ ତ୍ୟାଗର କମ୍ ଉଦାହରଣ ନାହିଁ ଆମ ପାଖରେ । ମାତ୍ର ସେସବୁ ଗତକାଲିର ଘଟଣା । ସେ ପରମ୍ପରା ସ୍ଥାନରେ ଏବେ ଆସନ ଦୃଢ଼ୀଭୂତ ହେଇଛି ସ୍ୱାର୍ଥର । ସବୁକିଛି ନିଜ ପାଇଁ ଆବୋରି ନେବାର ଅଭିପ୍ସାରୁ ସବୁ ଅସୁବିଧାର ଆରମ୍ଭ ହୋଇଯାଇଛି ଯେପରି ।

ଗପଟିଏ ମନେ ପଡୁଚି । ଥରେ ମୁଲ୍ଲା ନାସିରୁଦ୍ଦିନ୍ ବାହାରେ ବୁଲୁଥିବା ସମୟରେ ହଠାତ୍ ନିଜ ପଡୋଶୀଙ୍କ ଘରୁ କ୍ରନ୍ଦନ ରୋଳ ଆସୁଥିବାର ଶୁଣି ପାରିଲେ । ସଙ୍ଗେ ସଙ୍ଗେ ସେ ତାଙ୍କ ପଡୋଶୀଙ୍କ ଘରେ ପହଞ୍ଚି କାନ୍ଦିବାର କାରଣ ଜାଣିବାକୁ ଚାହିଁଲେ । ସେତେବେଳେ ପଡୋଶୀଙ୍କ ଭାଇର ଅକାଳ ମୃତ୍ୟୁ ହୋଇଥାଏ । ମୁଲ୍ଲା ସବୁ ଜାଣିବା ପରେ ପଡୋଶୀଙ୍କୁ ବୁଝାଇବାକୁ ଚେଷ୍ଟାକଲେ : ''ଏ ଜୀବନ କ୍ଷଣିକ । ଥରେ ଜନ୍ମ ନେଲେ ମରିବା ଧ୍ରୁବ ସତ୍ୟ । ତେଣୁ ଏଇ କ୍ଷଣିକ ମାୟାରୁ ମୁକୁଳିବାକୁ ଚେଷ୍ଟାକର ।'' ମୁଲ୍ଲାଙ୍କ ପ୍ରବୋଧନାର କିଛି ସମୟ ପରେ ପଡୋଶୀ ତାଙ୍କ ପ୍ରତି ହୋଇଥିବା ଦାରୁଣ ଦୁଃଖକୁ ସହ୍ୟକରିବାକୁ ଚେଷ୍ଟା କଲେ ।

ଏଇ ଘଟଣାର କିଛିଦିନ ପରେ ଦିନେ ପଡୋଶୀ ଜଣକ ରାସ୍ତା ଅତିକ୍ରମ କରୁଥିବା ସମୟରେ ମୁଲ୍ଲାଙ୍କ ଘରେ କାନ୍ଦଣାର ସ୍ୱର ଶୁଣି ସେଠାରେ ଯାଇ ପହଞ୍ଚିଲେ । ପଚାରି ବୁଝିଲେ ମୁଲ୍ଲାଙ୍କ ଛେଳିଟି ମରି ଯାଇଥିବାରୁ ଏପରି ଦୁଃଖଦ ପରିସ୍ଥିତି ସୃଷ୍ଟି ହୋଇଛି । ପଡୋଶୀ ଆଶ୍ଚର୍ଯ୍ୟ ହେଇ ମୁଲ୍ଲାଙ୍କୁ ପଚାରିଲେ - ''ତମେ ମୋ ଭାଇ ମରିଯିବା ଦିନ ଏତେ ଭାଷଣ ଦେଉଥିଲ ଅଥଚ ଛେଳିଟିଏ ମରିଯିବାରୁ ତମେ ଏପରି କାନ୍ଦୁଛ ?''

''ଭାଇ ଥିଲା ତମର । ମାତ୍ର ଛେଳିଟା ହଉଚି ମୋ ନିଜର'' ଏତିକି କହି ସେ ପୁଣି କାନ୍ଦିବାକୁ ଲାଗିଲେ ।

ଆଜିର ସଂସାରର ପରିସ୍ଥିତିଟା ପ୍ରାୟ ଏମିତି । ଉଚ୍ଚାରଣ ଆଉ ଆଚରଣରେ ଅନେକ ବ୍ୟବଧାନ । ଆମର ଚରିତ୍ର ଆମର ପ୍ରବୃତ୍ତି ଦ୍ୱାରା ନିୟନ୍ତ୍ରିତ । କୋଡିଏ ଲକ୍ଷ ବର୍ଷ ଧରି ମଣିଷ

ଏଇ ଗ୍ରହରେ ବାସ କରି ଆସୁଥିଲେ ସୁଦ୍ଧା ଏଯାବତ୍ ସେ ଭୟ, ଘୃଣା, ପ୍ରେମ, କାତରତା, ଈର୍ଷା ଓ ଅସୂୟା ଭଳି ପ୍ରବଣତାରୁ ନିଜକୁ ମୁକ୍ତ ରଖି ପାରିନି । ମାତ୍ର ଦଶ ହଜାର ବର୍ଷ ହେଲା ବିଚାର ବୁଦ୍ଧି ପ୍ରୟୋଗ କରିବାକୁ ଆରମ୍ଭ କରିଛି । ସେଇଥିପାଇଁ ମଣିଷର ଚରିତ୍ରରେ ବୁଦ୍ଧିର ପ୍ରୟୋଗ ଅପେକ୍ଷା ପ୍ରବୃତ୍ତିର ମାତ୍ରାସର୍ବାଧିକ । କେହି କେହି ଯୋଗ ଜନ୍ମା ଏଇ ପ୍ରବୃତ୍ତିର ଊର୍ଦ୍ଧ୍ୱକୁଯିବାକୁ ଅବିରତ ଚେଷ୍ଟା କରିଛନ୍ତି । ସେମାନଙ୍କ ଭିତରୁ ବାରି ହୋଇ ପଡନ୍ତି ଆବ୍ରାହାମ ଲିଙ୍କନ । ରାଷ୍ଟ୍ରପତି ଭାବେ ନିର୍ବାଚିତ ହେବା ପରେ, ସେ ଭାଷଣ ପ୍ରସଙ୍ଗରେ ଆମେରିକୀୟମାନଙ୍କୁ କହିଥିଲେ : ''ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସକାଶେ, ଅଳ୍ପ ଦିନ ପାଇଁ ମୋତେ ନିର୍ବାଚିତ କରାଯାଇଛି ଏବଂ ତୁମମାନଙ୍କ ଦୃଷ୍ଟିରେ ଗୋଟିଏ କ୍ଷମତାର ଆରୋପ କରାଯାଇଛି ଯାହା ଅଳ୍ପଦିନ ଭିତରେ ଉଭେଇଯିବ । ଭଗବାନଙ୍କୁ ଅଶେଷ ଧନ୍ୟବାଦ, ଯଦି କେବେ ବି ମୋର ପ୍ରଶାସନ ଫାଲ୍ତୁ ଅଥବା ଅଭଦ୍ର ପ୍ରମାଣିତ ହୁଏ, ଯାହା ଅଧିକାଂଶ ସମୟରେ ହୋଇଥାଏ । ତେବେ ଆପଣ ଓ ଜନସାଧାରଣଙ୍କର ନିଜ ପ୍ରତି ଓ ସମ୍ବିଧାନ ପ୍ରତି ସମ୍ମାନ ଥିଲେ ମୁଁ କାହାର କାଣିଚାଏ ଅନିଷ୍ଟ କରି ପାରିବି ନାହିଁ । ''(I have been selected to fill an important office for a brief period, and am now, in your eyes, invested with an influence which will soon pass away. But should my administration prove to be a very wicked one, or what is more probable a foolish one, if you, the people are true to yourselves and the constitution, there is but little harm I can do.) ଭାରତର ଲୋକସଭା ନିର୍ବାଚନ ପାଖେଇ ଆସୁଥିବା ଅବସରରେ ମଣିଷର ବିପର୍ଯ୍ୟୟର ହିସାବ କରୁଥିବା ରାଜନୈତିକ ନେତୃବର୍ଗ ଓ ଅଗଣିତ ଭୋଟଦାତାଙ୍କୁ ବିଶିଷ୍ଟ ବ୍ୟଙ୍ଗ ଚିତ୍ରକର ପୋଗୋ(Pogo)ଙ୍କ ଉକ୍ତିଟି ମନେ ପକାଇଦେବା ଉଚିତ ହେବ । ''ଆମେ ଶତ୍ରୁକୁ ଭେଟି ସାରିଛୁ ଏବଂ ସେ ହେଉଛି ଆମେ ନିଜେ'' । (We have met the enemy and it is we.) ହୁଏତ ସେଇଥି ପାଇଁ ମଣିଷ ସବୁବେଳେ ଅନ୍ୟର ଭାଇର ବିୟୋଗରେ ନୁହେଁ, ନିଜ ଛେଳିର ମୃତ୍ୟୁରେ ବିଳାପ କରି ଆସିଛି ।



# ଦର୍ପଣ ସାମ୍ନାରେ

**କି**ଛି ଦିନ ତଳେ ଖବରକାଗଜ ପୃଷ୍ଠାରେ ପ୍ରକାଶିତ ଏକ ଆଲୋଚନା ପଢ଼ିବାର ସୁଯୋଗ ମିଳିଥିଲା । ଆଲୋଚନାଟି ଲବଣ ସତ୍ୟାଗ୍ରହ ସମୟର ସ୍ମୃତି ଓ ସଂଗ୍ରାମ ସଂପର୍କୀୟ ଆଲୋଚନାରେ ପରିପୁଷ୍ଟ ହୋଇଥିଲା । ଏହି ଆଲୋଚନାର ଲେଖକ ଥିଲେ ଦେଶବନ୍ଧୁ ସ୍ୱାଇଁ । ଅନେକ ବର୍ଷ ପରେ ତାଙ୍କର ଲେଖାଟିଏ ପଢ଼ିବାର ସୁଯୋଗ ମିଳିଥିଲା ଏ ଲେଖକକୁ । ଶ୍ରୀ ସ୍ୱାଇଁ ଜଣେ ଗାଳ୍ପିକ । ଭଲ ଗପ ଲେଖିବାରେ ତାଙ୍କର ଦକ୍ଷତା ସଂପର୍କରେ ପ୍ରାୟ ଦୁଇ ଦଶନ୍ଧି ତଳେ ଏ ଲେଖକ ଜାଣିବାର ସୁଯୋଗ ପାଇଥିଲା । ସମ୍ଭବତଃ 'ତୋହ ଲାଗି ରାଜଜେମା' ଗଳ୍ପ ବହିଟି ପ୍ରକାଶ ପାଇବା ପରେ ସେ ଆଉ ଲେଖାଲେଖି କରୁଥିବା ନଜରକୁ ଆସିନାହାଁନ୍ତି । କୌଣସି ଏକ ସାମୟିକ ପତ୍ରିକାରେ 'ସୁନାହରିଣ' ଗଳ୍ପଟିଏ ପ୍ରକାଶ କରିବା ପରେ ତାଙ୍କ ଗଳ୍ପର ପ୍ରେମରେ ପଡ଼ିବା ଛଡ଼ା ଅନ୍ୟ ଉପାୟ ନଥିଲା ଯେମିତି । ସ୍ତ୍ରୀ'ର ଗହଣା କରି ଦେବା ଲାଗି ସ୍ୱାମୀ ଉପରେ ସୃଷ୍ଟି ହୋଇଥିବା ଅଭିମାନ ଓ ପରେ ସ୍ୱାମୀର ସମ୍ମତି ସୂଚନାକୁ ବେଶ୍ ସୁନ୍ଦର ଭାବେ ବର୍ଣ୍ଣନା କରିଥିଲେ ସେ ଏଇ ଗଳ୍ପରେ। ତେବେ ଏପରି ଜଣେ ସୃଜନଶୀଳ ତଥା ଦକ୍ଷ ଗାଳ୍ପିକ କାହିଁକି କେଜାଣି ଗଳ୍ପ ଲେଖୁନାହାଁନ୍ତି -ଏକଥା ଅନେକ ସମୟରେ ବିଷଣ୍ଣ ମାନସିକତାକୁ ଆମନ୍ତ୍ରଣ କରିଥାଏ । ଲାଗେ, ସୂର୍ଯ୍ୟୋଦୟର ପ୍ରଚଣ୍ଡ ସମ୍ଭାବନା ପାଇଥିବା ଆକାଶରେ ପ୍ରତ୍ୟୁଷର ଅନେକ ଆଗରୁ କଳାବାଦଲମାନେ ପହଞ୍ଚି ସାରିଛନ୍ତି ।

ଏଇ ଅବସରରେ କେତେକ ସମଧର୍ମୀ ସ୍ୱତଃ ଆସିଯା'ନ୍ତି ସ୍ମୃତିର ଇଲାକାକୁ । ମନେପଡ଼ନ୍ତି କବି ସୁକାନ୍ତ ମିଶ୍ର । ଅଧୁନା ସାମ୍ବାଦିକତା ବୃତ୍ତିରେ କୁଟୁମ୍ବ ପୋଷନ୍ତି । ମାତ୍ର ଏଇ ପ୍ରଚଣ୍ଡ ପ୍ରତିଭାଧର କବିଙ୍କ ଲେଖନୀରୁ ନିଃସୃତ କବିତା ଅଷ୍ଟମ ଦଶକର ପ୍ରାରମ୍ଭରେ ବେଶ୍ ଆଲୋଡ଼ନ ସୃଷ୍ଟି କରିପାରିଥିଲା । ସେଇଥିପାଇଁ ଥରେ କବି ରାଜେନ୍ଦ୍ର କିଶୋର ପଣ୍ଡା ଲେଖିଥିଲେ; 'ଯେତେ ଦୂର ପାରୁଛୁ ଚାଲି ଯା' ସୁକାନ୍ତ । ଜଣାନାହିଁ କେଉଁ ବିଶିଷ୍ଟ କାରଣ ଯୋଗୁଁ ସେ ଆଜି ନୀରବତା ପରି ନୀରବ । ବୃତ୍ତିର ସ୍ୱଚ୍ଛଳତା କିପରି ପ୍ରବୃତ୍ତିର ଆହ୍ୱାନକୁ ପ୍ରତ୍ୟାଖ୍ୟାନ କରେ ତା'ର ଉଦାହରଣରେ ମନେ ପଡ଼ନ୍ତି ଦୁଇଜଣ ବିଶିଷ୍ଟ ଗାଳ୍ପିକ । ପ୍ରଥମତଃ, 'ବହୁବଚନ' ପରି ସୃଷ୍ଟି କରିଥିବା ଅମ୍ଳାନ ତଥା ଲୋକପ୍ରିୟ ଗଳ୍ପ ବହିର ସ୍ରଷ୍ଟା ଗାଳ୍ପିକ ସତ୍ୟ ମିଶ୍ରଙ୍କ କଥା କୁହାଯାଉ । ଅଧୁନା ଇଣ୍ଡିଆନ୍ ଓଭରସିଜ୍ ବ୍ୟାଙ୍କର ଜଣେ ବରିଷ୍ଠ ତଥା ପଦସ୍ଥ କର୍ମଚାରୀ ଭାବେ ସେ ଅବସ୍ଥାପିତ ।

ପ୍ରାୟ ଦୁଇ ଦଶନ୍ଧି ତଳେ ପାଠକ ତଥା ସମାଲୋଚକମାନଙ୍କୁ ଆଶ୍ଚର୍ଯ୍ୟ ଚକିତ କରି

ଦେଇଥିବା ଏଇ ଗାଳ୍ପିକଙ୍କ ଆବିର୍ଭାବ ଓ ଅନ୍ତର୍ଦ୍ଧାନ ଠିକ୍ ସାହିତ୍ୟାକାଶରେ ଗୋଟାଏ ଧୂମକେତୁ ପରି । ତାଙ୍କ ରଚିତ ପିଟର୍ ଓ ସ୍କାରିଆ ପରି ଚରିତ୍ରକୁ ଏବେ ବି ଶ୍ରଦ୍ଧାର ସହ ସ୍ମରଣ କରନ୍ତି ପାଠକେ । ପ୍ରାୟ ଦଶ ବର୍ଷ ତଳେ ଏକ ବ୍ୟକ୍ତିଗତ ଆଲୋଚନା ସମୟରେ 'ସେ କାହିଁକି ଲେଖୁ ନାହାଁନ୍ତି' ପ୍ରଶ୍ନର ଉତ୍ତରରେ ଶ୍ରୀ ମିଶ୍ର ଉତ୍ତର ଦେଇଥିଲେ - 'ସମୟ ପାଉନି' ଯାହା ତାଙ୍କର ଶ୍ରଦ୍ଧାଶୀଳ ପାଠକଙ୍କୁ ଯନ୍ତ୍ରଣା ଦିଏ ପ୍ରତିନିୟତ ।

ଚାକିରୀ କରିବାର ଅନେକ ଅନେକ ଆଗରୁ, ବୟସ୍କ ଓ ବିଶିଷ୍ଟ ଲେଖକମାନଙ୍କ ସହ ଆଗ ଧାଡ଼ିରେ ମର୍ଯ୍ୟାଦାର ସେହ ନିଜ ଆସନ ଅଳଙ୍କୃତ କରି ପାରିଥିବା ଶ୍ୟାମାପ୍ରସାଦ ଚୌଧୁରୀଙ୍କୁ ଏବେ ପାଠକ ଓ ତରୁଣ ଗାଳ୍ପିକମାନେ ବିସ୍ମରଣ ହେଲେଣି । ନୂତନ ଶୈଳୀ, କଥାବସ୍ତୁ ଓ ତାତ୍ତ୍ୱିକ ଅନୁଶୀଳନ ପାଇଁ ଶ୍ୟାମାପ୍ରସାଦ ଓଡ଼ିଆ ଗଳ୍ପ ସାହିତ୍ୟରେ ଅବଶ୍ୟ ସ୍ମରଣୀୟ ହୋଇ ରହିବେ । 'ନିଜଠାରୁ ନିଜର ଦୂରତା', 'କାପୁରୁଷର ଗୋଡ଼' ଭଳି ଗଳ୍ପ ବହି ଓ 'ଜୟନ୍ତ ଯାହା ଜାଣେନାହିଁ' ପରି ଉପନ୍ୟାସର ସ୍ରଷ୍ଟାଙ୍କୁ ଗତ କିଛି ବର୍ଷ ହେଲା ଓଡ଼ିଆ ପତ୍ରପତ୍ରିକାରେ ଆଉ ଦେଖିବାକୁ ମିଳୁନି । କିଛି କିଛି ବନ୍ଧୁଙ୍କର ଖେଦୋକ୍ତି ହେଉଛି -'ଚାକିରୀ ଶ୍ୟାମାପ୍ରସାଦଙ୍କୁ ଗିଳି ଦେଲା ।' ଆୟକର ବିଭାଗର ବରିଷ୍ଠ କର୍ମଚାରୀ ଭାବରେ ସେ ଏବେ ଓଡିଶା ବାହାରେ ଅଛନ୍ତି ।

ଠିକ୍ ସେଇପରି ମନେପଡ଼ନ୍ତି 'ପୁରୀ ବୋଲି'ର ପ୍ରସିଦ୍ଧ ଲେଖକ ସିଦ୍ଧେଶ୍ୱର ମହାପାତ୍ର । ପ୍ରଚଣ୍ଡ ନିର୍ଭୀକ ଓ ଶବ୍ଦ ସଂଯୋଜନାରେ ବେଶ୍ ଧୂରୀଣ ଏଇ ଗାଳ୍ପିକଙ୍କ ପ୍ରଶଂସାରେ ଏକଦା ଶତମୁଖ ହୋଇ ଉଠିଥିଲେ ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି । ତାଙ୍କ 'ନୀଳାଦ୍ରି ବିଜୟ' ଉପନ୍ୟାସର ମୁଖବନ୍ଧରେ ଶ୍ରୀ ମହାପାତ୍ରଙ୍କୁ ସେ କୃତଜ୍ଞତା ଜଣାଇଛନ୍ତି । ଅନେକ ସମୟରେ ମନେହୁଏ ସେଇ ପ୍ରଶଂସା ହିଁ ତାଙ୍କ ପାଇଁ କାଳ ହେଲା ।

ଆହୁରି ଅନେକ ତରୁଣ ଲେଖକ ଅଛନ୍ତି ଯେଉଁମାନଙ୍କ ଆଦ୍ୟ ମହକରେ ପାଠକ ମତୁଆଲା ହେବା ପାଇଁ ପ୍ରସ୍ତୁତ ହେଲା ବେଳକୁ ସେମାନେ ଝରି (?) ଯାଉଛନ୍ତି ।

ତାହାହିଁ ଦୁଃଖ । ତେବେ ଏଇ ପ୍ରସଙ୍ଗରେ ହଠାତ୍ ମନେ ପଡୁଛନ୍ତି ବିଶିଷ୍ଟ ଆଙ୍ଗ୍ଲୋ-ଇଣ୍ଡିଆନ୍ କବି ଡମ୍ ମରିସ୍‌ଙ୍କ କଥା ମାତ୍ର ପନ୍ଦର ବର୍ଷ ବୟସରେ ୧୯୫୩ ମସିହାରେ ପ୍ରଖ୍ୟାତ୍ କବି ଷ୍ଟିଫେନ୍ ସ୍ପେଣ୍ଡରଙ୍କ ସହ ତାଙ୍କର ଭେଟ ହୁଏ । କବିତା ଲେଖିବା ସଂପର୍କରେ ସ୍ପେଣ୍ଡର ଥରେ ତାଙ୍କୁ କହିଥିଲେ : ଅବଲୀଳା କ୍ରମେ ସାମ୍ନାରେ ରଖାଯାଇଥିବା ଦର୍ପଣକୁ ଚାହିଁବା ପରି କବିତା ଲେଖିବା । ତୁମେ ଯେତେ ଅଧିକା ଅଧିକା କବିତା ଲେଖୁଥିବ ଅଥବା ଯେତେ ଅଧିକବାର ଦର୍ପଣରେ ମୁହଁ ଦେଖୁଥିବ ତାହା ସେତିକି ଭୟଙ୍କର ଦେଖାଯିବ । ଆସ୍ତେ ଆସ୍ତେ ତାହା ତମେ ବୁଝି ଯିବ । (Writting Poetry is looking into a succession

of mirrors, and as you write more and more of it, the face you see in the mirror becomes more and more horrible, you shall learn that eventually)

ବୋଧେ ତାହାହିଁ ପ୍ରମାଣିତ ହେଇଥିଲା ଡମ୍ ମରିସ୍‌ଙ୍କ ଭାଗ୍ୟରେ, ସତେଇଶି ବର୍ଷ ବୟସ ହେବଳକୁ 'ଏ ବିଗିନିଙ୍ଗ' 'ପୋଏମ୍‌ସ' ଏବଂ 'ଜନ୍ ନୋ ବଡ଼ି' ପରି ବହୁଚର୍ଚ୍ଚିତ ତିନିଗୋଟି କବିତା ବହି ପ୍ରକାଶ ପାଇବା ପରେ ଦୀର୍ଘ ସତର ବର୍ଷ ଯାଏ ପୁରାପୁରି ନୀରବ ରହିଗଲେ ।

ଗୋଟିଏ ହେଲେ କବିତା ପ୍ରକାଶ ପାଇଲାନି । ତାଙ୍କର ଅନେକ ସମାଲୋଚକ ପରିହାସ ଛଳରେ ତାଙ୍କୁ ରାଁବୋଙ୍କ ସହ ତୁଳନା କରିଥାନ୍ତି । କାରଣ ବିଶ୍ୱ ପ୍ରସିଦ୍ଧ ହେବାପରେ ମାତ୍ର ଉଣେଇଶି ବର୍ଷ ବୟସରେ ରାଁବୋ (Rimband) କବିତା ଲେଖିବା ଛାଡ଼ି ଦେଇଥିଲେ । ପ୍ରକୃତପକ୍ଷେ କବିତା ରାଁବୋଙ୍କୁ ଛାଡ଼ପତ୍ର ଦେଇଥିଲା ସେତେବେଳକୁ । ସତର ବର୍ଷର ନୀରବତାକୁ ଭାଙ୍ଗି, ସହକବିମାନଙ୍କ ଆଶଙ୍କାକୁ ଭୁଲ୍ ପ୍ରମାଣିତ କରି ଡମ୍ ପୂର୍ବାପେକ୍ଷା ଖୁବ୍ ଉଚ୍ଚକୋଟୀର କବିତା ଲେଖି ପାଠକଙ୍କୁ ଉପହାର ଦେଲେ । ପୁଣି ପ୍ରକାଶ ପାଇଲା 'ସେରେଣ୍ଡିପ୍' ଏବଂ 'ଷ୍ଟିଲିସ୍' ପରି କବିତା ବହି ।

ପରିହାସ ଛଳରେ ସେ କହନ୍ତି, ଦୀର୍ଘ ସତର ବର୍ଷ ଯାଏ, ଉପଯୁକ୍ତ ଭାବ, ଶବ୍ଦର ତଲାସ୍‌ରେ ଥିଲେ ସେ । ସୃଷ୍ଟି କରିବାର ଗର୍ଭ ଯନ୍ତ୍ରଣା ପାଇଛନ୍ତି ସେ ଅହରହ । ସେଇଥିପାଇଁ କୁହାଯାଏ କବିତାର ଜନ୍ମ ଯନ୍ତ୍ରଣା ହିଁ କବିର ଅସଲ ଯନ୍ତ୍ରଣା ।

ଏଇ ପରିପ୍ରେକ୍ଷୀରେ ସାମୟିକ ନୀରବ ହୋଇଥିବା ସୃଜନଶୀଳ କବି ଓ ଗାଳ୍ପିକମାନେ ଯେ ସୃଜନ ଯନ୍ତ୍ରଣାରେ ଛଟପଟ ହେଉଥିବେ ତାହା ଏ ଲେଖକର ବିଶ୍ୱାସ । କଲ୍‌ରିଜ୍‌ଙ୍କ ଭାଷାରେ : ଯିଏ ଥରେବି ଏଇ କଳାର ଅଧିଷ୍ଠାତ୍ରୀ ଦେବୀଙ୍କ ସଂସ୍ପର୍ଶରେ ଆସିଚି ସାରା ଜୀବନ ସେଥିରୁ ତା'ର ନିସ୍ତାର ନାହିଁ । (Anyone who has ever been visited by the Muse is hunted by her ever after)

ତେବେ କେଉଁମାନେ ରାଁବୋଙ୍କ ପରି 'ମୁଁ ସେ ଫାଲ୍‌ତୁ କାମ କରି ସାରିଛି ' । (I have done with that rubbish !) ବୋଲି ଉଦାର କଣ୍ଠରେ କହିବେ ଅଥବା ସ୍ପେଣ୍ଡରଙ୍କ ପରି ଦର୍ପଣ ସାମ୍ନାରେ ନିଜର ବିକୃତ ମୁହଁ ଦେଖି ଚମକି ଉଠିବେ ସେ କଥା ସମୟ କହିବ ।

ତଥାପି ଭବିଷ୍ୟତକୁ ନେଇ ବେଶ୍ ଆଶାବାଦୀ ହେବା ଛଡ଼ା ଆଉ କ'ଣ ଉପାୟ ଅଛି ?

○

# ଦ୍ୱିତୀୟ ସରକାର

୧୯୫୪ ମସିହା ସେପ୍ଟେମ୍ବର ମାସର ଘଟଣା । ପ୍ରସିଦ୍ଧ ଉର୍ଦ୍ଦୁ ଔପନ୍ୟାସିକ ସାଦତ୍ ହାସାନ୍ ମଣ୍ଟୋ ଗୋଟିଏ ଖୋଲା ଚିଠି ଲେଖିଥିଲେ ଭାରତର ତତ୍କାଳୀନ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ । ଚିଠିଟି ସେତେବେଳେ ବୁଦ୍ଧିଜୀବୀ ମହଲରେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା । ପ୍ରସଙ୍ଗ ଥିଲା କାଶ୍ମୀର ସମସ୍ୟା । କାଶ୍ମୀର ସମ୍ପର୍କରେ ନେହେରୁଙ୍କ ଦୃଷ୍ଟିଭଙ୍ଗୀକୁ ସେ କେବଳ ବ୍ୟଙ୍ଗ କରି ନଥିଲେ ବରଂ କାଶ୍ମୀରକୁ ନିଜ ଅକ୍ତିଆରରେ ରଖିବାକୁ ଚେଷ୍ଟା ନ କରିବରଂ କାଶ୍ମୀରବାସୀଙ୍କୁ ଗଣତାନ୍ତ୍ରିକ ପଦ୍ଧତିରେ ସେମାନଙ୍କ ଭାଗ୍ୟ ନିର୍ଣ୍ଣୟ କରିବାର ସୁଯୋଗ ଦେବାକୁ ସେ ନେହେରୁଙ୍କୁ ପରାମର୍ଶ ଦେଇଥିଲେ ।

ଚିଠିଟିର ଶେଷରେ ସେ ପରିହାସ ଛଳରେ ପଣ୍ଡିତ ସାଦତ୍ ହାସାନ ମଣ୍ଟୋ ବୋଲି ଦସ୍ତଖତ ମଧ୍ୟ କରିଥିଲେ । ଏହା କେବଳ ନିଛକ ପରିହାସ ନ ଥିଲା ବରଂ ଔପନ୍ୟାସିକ ମଣ୍ଟୋଙ୍କ ନିଜ ପରମ୍ପରା ପ୍ରତି ଥିବା ଗଭୀର ଅନୁରକ୍ତିର ଏହା ଥିଲା ଏକ ବଳିଷ୍ଠ ଉଦାହରଣ । ପ୍ରକାଶଥାଉ କି ଶ୍ରୀ ମଣ୍ଟୋ ମଧ୍ୟ ପଣ୍ଡିତ ନେହେରୁଙ୍କ ପରି କାଶ୍ମୀରର କୁଳୀନ ବ୍ରାହ୍ମଣ ସମ୍ପ୍ରଦାୟର ଥିଲେ, ମାତ୍ର ତାଙ୍କର ପୂର୍ବଜମାନେ କାଳକ୍ରମେ ମୁସଲମାନ ସଂପ୍ରଦାୟରେ ସାମିଲ ହୋଇ ଯାଇଥିଲେ । ଶ୍ରୀ ମଣ୍ଟୋଙ୍କର ନିଜ ନାମ ପୂର୍ବରୁ 'ପଣ୍ଡିତ' ଲଗାଇବା ଘଟଣା ବେଶ୍ କୌତୁହଳ ସୃଷ୍ଟି କରିଥିଲା ସେତେବେଳେ ।

ଦେଶ ବିଭାଜନ ବେଳେ ଶ୍ରୀ ମଣ୍ଟୋ ପାକିସ୍ତାନକୁ ନିଜର ବାସସ୍ଥଳୀ ଭାବେ ବାଛି ନେଇଥିଲେ । ଏକାନ୍ତ ନିଃସଙ୍ଗ ଓ ଯନ୍ତ୍ରଣାଦାୟକ ଥିଲା ତାଙ୍କର ଶେଷ ଜୀବନ କାଳ । ପଣ୍ଡିତ ନେହେରୁଙ୍କୁ ଚିଠି ଲେଖିବାର ମାତ୍ର ଚାରିମାସ ପରେ ତାଙ୍କର ମୃତ୍ୟୁ ହୋଇଥିଲା । ତାଙ୍କ ମୃତ୍ୟୁର ପାଖାପାଖି ଚାଳିଶ ବର୍ଷ ପରେ ଦୀଲ୍ଲୀର ଏକ ସଂଭ୍ରାନ୍ତ ପ୍ରକାଶନ ସଂସ୍ଥା ଶ୍ରୀ ମଣ୍ଟୋଙ୍କର ରଚନା ସମଗ୍ରକୁ 'ଦସ୍ତାବେଜ୍' ନାମରେ ପ୍ରକାଶ କଲେ । ଏଇ ଦସ୍ତାବେଜର ଚତୁର୍ଥ ଭାଗରେ ବହୁ ଚିଠିପତ୍ର ସ୍ଥାନିତ ହୋଇଥିଲେ ମଧ୍ୟ ଜାଣିଶୁଣି ଶ୍ରୀ ମଣ୍ଟୋଙ୍କ ନେହେରୁଙ୍କୁ ଲେଖିଥିବା ଚିଠି ସେଥିରୁ ବାଦ୍ ଦିଆଯାଇଛି ।

ଔପନ୍ୟାସିକ ଅବଦୁଲ ବିସ୍‌ମିଲ୍‌ହା ହିଁ ଏଇ ଘଟଣାଟିକୁ ପ୍ରଥମେ ଲୋକଲୋଚନକୁ ଆଣିଥିଲେ ସାଦତ୍ ହାସାନ୍ ମଣ୍ଟୋ ଓ ତାଙ୍କ ଜୀବନ ତଥା ରଚନା ଶୀର୍ଷକ ଆଲୋଚନାଚକ୍ର ଚାଲିଥିବା ବେଳେ । ଉର୍ଦ୍ଦୁରେ ଲେଖାଯାଇଥିବା ଚିଠିଟି କେବେ ବି ହିନ୍ଦୀ ଅଥବା ଅନ୍ୟ କୌଣସି

ଭାରତୀୟ ଭାଷାରେ ଅନୁଦିତ ନ ହେବା ଫଳରେ ତାହା ସାଧାରଣ ଜନତାର ଦୃଷ୍ଟି ଗୋଚର ହୋଇ ପାରିନଥିଲା । କାଶ୍ମୀର ପ୍ରସଙ୍ଗ ନେଇ ସରକାରଙ୍କ ନୀତିକୁ ଏହା ସୁହାଉ ନଥିବାରୁ, ଉକ୍ତ ଚିଠିଟିକୁ ଦସ୍ତାବେଜ୍‌ରେ ସ୍ଥାନିତ କରିବାରେ ପ୍ରକାଶକ ଅକ୍ଷମ ହେବା ସାହିତ୍ୟ ଇତିହାସରେ ଏକ କଳଙ୍କିତ ଅଧ୍ୟାୟ ନିଶ୍ଚିତ । ତେବେ ଲେଖକର ସ୍ୱାଧୀନ ମତାମତ ବା ଚିନ୍ତାଧାରାକୁ କୌଣସି କାଳରେ ଶାସକ ଓ ରାଜା ବନ୍ଦ କରିବାର ଅପଚେଷ୍ଟା କରିଛି ସିନା ସଫଳ ହୋଇପାରିନି । ଲେଖକର ସ୍ୱାଭିମାନ ତା ଜାତିର ସ୍ୱାଭିମାନ- ଏହା ହେଉଚି ଧ୍ରୁବ ସତ୍ୟ । ଇତିହାସ ବି ଏ କଥା ବାରମ୍ବାର ଆମ ପାଖରେ ଦୋହରାଇଛି । ବୈଷ୍ଣବ କବି ଦୀନକୃଷ୍ଣ ଦାସଙ୍କଠାରୁ ଆରମ୍ଭ କରି ପ୍ରାୟ ଦୁଇଦଶନ୍ଧି ତଳେ ଅବିଭାଜ୍ୟ ରୁଷିଆର ଔପନ୍ୟାସିକ ଆଲେକ୍‌ଜାଣ୍ଡାର ସୋଲଝେନିତ୍‌ସ୍ଥିନ ବି ଏ କଥା ପ୍ରମାଣ କରିସାରିଛନ୍ତି । ନୋବେଲ୍ ପୁରସ୍କାର ପାଇବା ପରେ ଯେତେବେଳେ ତାଙ୍କୁ ତତ୍କାଳୀନ ରୁଷିଆର ସରକାର ନିର୍ବାସିତ କରିଥିଲେ ନିଜ ଦେଶରୁ - ସୋଲଝେନିତ୍‌ସ୍ଥିନ ଘୋଷଣା କଲେ : ଲେଖକ ହେଉଚି ତା ନିଜ ଦେଶରେ ଦ୍ୱିତୀୟ ସରକାର । (Writer is the Second Government in his own State) ଜଙ୍ଗଲରେ କେବଳ ଗୋଟିଏ ସିଂହ ରାଜା ହୋଇପାରେ । ଅନ୍ୟ ସିଂହଟି ପ୍ରଥମ ସିଂହର ଶତ୍ରୁ ହେଇଯାଏ । ଠିକ୍ ସେହିପରି ଗୋଟିଏ ଦେଶରେ ଦୁଇଟି ସ୍ୱାଧୀନ ସରକାର କ'ଣ ସମ୍ଭବ ? ଅନେକ ସମୟରେ ପ୍ରଥମ ସିଂହର ଅଦଉତିରେ କ୍ଷୁଣ୍ଣ ହେଇଚି ଦ୍ୱିତୀୟ ସିଂହ । ସରକାରୀ କଳର ସ୍ୱେଚ୍ଛାଚାରିତାରେ ଆହତ ହେଇଚି ଲେଖକର ସ୍ୱାଧୀନଚେତା ପ୍ରାଣ କାଳେ କାଳେ ।

କିଛିବର୍ଷ ତଳେ ଜଣେ ମୁଖ୍ୟମନ୍ତ୍ରୀ ଗୋଟିଏ ସାହିତ୍ୟ ଏକାଡେମୀର ସଭାପତି ହେବାକୁ ମନ ବଳାଇଲେ । ରାଜନୀତି ସହିତ ଟିକେ ସାହିତ୍ୟିକ ହେବାର ଇଚ୍ଛାରୁ ହୁଏତ ସେ ଉକ୍ତ ଅନୁଷ୍ଠାନର ମୁଖ୍ୟ ହେବାକୁ ଇଛା କରନ୍ତେ, ତୁରନ୍ତ ଚାରିଆଡେ ଖବର ରଟିଲା ଯେ, ଉକ୍ତ ମୁଖ୍ୟମନ୍ତ୍ରୀଙ୍କଠାରୁ ବଳି ଅଧିକ ଯୋଗ୍ୟ ସାହିତ୍ୟିକ ଦେଶରେ ନ ଥିବାରୁ ତାଙ୍କୁ ଉକ୍ତ ଅନୁଷ୍ଠାନର ସଭାପତି କରାଗଲା । ଏ ଦେଶରେ ଏପରି ହେବା ନୂଆ କଥା ନୁହେଁ । ଅତୀତରେ ରାଜା ରାଜୁଡ଼ାଙ୍କ ରାଜସଭା ମଣ୍ଡନ କରି ଭାଟ ଓ ଚାଟୁକାରମାନେ ରହୁଥିଲେ । ସେମାନେ ରାଜାଙ୍କ ନାମରେ କବିତାମାନ ଭଣିତା କରୁଥିଲେ ଓ କବିମାନଙ୍କ ମଧ୍ୟରେ ରାଜା ଶ୍ରେଷ୍ଠ ଥିବାରୁ ରାଜାଙ୍କୁ କବିଚନ୍ଦ୍ର (ଅନ୍ୟାନ୍ୟ କବିମାନେ ଥିଲେ ତାରା ସଦୃଶ) ଉପାଧିରେ ଭୂଷିତ କରୁଥିଲେ । ଏବେ ମୁଖ୍ୟମନ୍ତ୍ରୀମାନେ ସାହିତ୍ୟ ଏକାଡେମୀର ସଭାପତି ହେବା ସେହି ପରମ୍ପରାର ପୁନଃର୍ନବୀକରଣ ମାତ୍ର । ସାହିତ୍ୟ ସହ ସମ୍ପର୍କ ଥାଉ କି ନ ଥାଉ ଏଣିକି ମୁଖ୍ୟମନ୍ତ୍ରୀମାନେ ନିଜକୁ ସାହିତ୍ୟ ପ୍ରବର କହି ଡିଣ୍ଡିମ ପିଟି ପାରିବେ । ଏ ପ୍ରକାର ଲଜ୍ଜାକର ଘଟଣା କେବଳ ଆମ ରାଜ୍ୟ ଛଡା ଅନ୍ୟତ୍ର ଦେଖିବାକୁ ମିଳେନାହିଁ । ସେମାନଙ୍କ ଚତୁରପଣ ତଥା ବେଙ୍ଗ ରଡି ଶୁଣି ସାରା ଜୀବନ ସାହିତ୍ୟ ପାଇଁ ସମର୍ପି ଦେଇଥିବା ସାହିତ୍ୟିକ- କୋଇଲିମାନେ ଆମ୍ବପତ୍ର ଗହଳରେ ଆତ୍ମଗୋପନ କରିଛନ୍ତି । କିନ୍ତୁ ଏ ଚତୁରତା ଯେ, ଦୀର୍ଘସ୍ଥାୟୀ ନୁହେଁ ତଥାକଥିକ

ଶାସନ ମୁଖ୍ୟମାନେ ବିସ୍ମରଣ ହେବା ଉଚିତ ନୁହେଁ । ସେମାନଙ୍କୁ ଏଥର ଗପଟିଏ ଶୁଣେଇବାର ପାଳି । କୁକୁଡାଟି ଓ କୁକୁରଟି ବାହାରିଲେ ବୁଲିବାକୁ । ଜଙ୍ଗଲରେ ଯାଉ ଯାଉ ହଠାତ୍ ରାତି ହୋଇଗଲା । ଗୋଟିଏ ଗଛତଳେ ଥିବା ଖୋଲରେ କୁକୁରଟି ରାତିରେ ଶୋଇବାକୁ ଗଲା ଏବଂ ଗଛ ଡାଳରେ ବିଶ୍ରାମ ନେବା ଲାଗି କୁକୁଡାଟି ସ୍ଥିର କଲା । ରାତି ପାହି ସକାଳ ହେବା ସମୟ । କୁକୁଡାଟି ପୂର୍ବଦିନମାନଙ୍କ ପରି ଉଠି ଚିରାଚରିତ ଭଙ୍ଗୀରେ ଡାକ ଛାଡିଲା । ତା'ର ଡାକ ଶୁଣି ସ୍ୱଳ୍ପଦୂରରେ ଶୋଇଥିବା ବିଲୁଆଟିର ନିଦ ଭାଙ୍ଗିଗଲା । ଆଜି ସକାଳୁ ସକାଳୁ ଗୋଟିଏ ଭଲ ଆହାର ମିଳିଲା ବୋଲି ଭାବି ବିଲୁଆଟି । ସେଇ ଗଛମୂଳରେ ପହଞ୍ଚିଲା ଏବଂ କୁକୁଡାର ସ୍ୱରକୁ ଶତ ପ୍ରଶଂସା କରିବା ସହ ତାକୁ ଅଭିନନ୍ଦନ ଜଣାଇବା ପାଇଁ ଆସିଛି ବୋଲି କହିଲା ଓ କୁକୁଡାଟିକୁ ତଳକୁ ଆସିବା ପାଇଁ ନିବେଦନ କଲା । କୁକୁଡାଟି ବିଲୁଆର ଚାଲାକ ପୂରାପୂରି ବୁଝି ସାରିଥିଲା । ତେଣୁ ସେ ପ୍ରସ୍ତାବଟିଏ ରଖିଲା ଯେ, ତାକୁ ଭେଟିବା ଆଗରୁ ଖୋଲରେ ଶୋଇଥିବା ତାର ବନ୍ଧୁଙ୍କ ସହ ପ୍ରଥମେ ଭେଟିବାକୁ ହେବ । ବିଲୁଆଟି କୁକୁଡାର ପ୍ରସ୍ତାବରେ ରାଜି ହୋଇ ଖୋଲର ଦ୍ୱାର ଉନ୍ମୁକ୍ତ କରନ୍ତେ ତୁରନ୍ତ କୁକୁରର ଶିକାର ହେଲା ଓ ତା'ର ପ୍ରାଣଗଲା ।

ଯେଉଁମାନେ ଅନ୍ୟ ମାନଙ୍କ ସହ ପ୍ରତାରଣା କରିଥାନ୍ତି । ଠିକ୍ ସେଇପରି ସେମାନେ ପ୍ରତାରିତ ହୋଇଥାନ୍ତି ବୋଲି ଇତିହାସ ଆମ୍ଭଙ୍କୁ ବାରମ୍ବାର ସ୍ମରଣ କରାଏ । ସମସ୍ତେ ଏଥିରେ ମଧ୍ୟ ଏକମତ ହୋଇଥାନ୍ତି । ଆଉ ସେଇଥି ପାଇଁ ଥରେ ନେପୋଲିଅନ କହିଥିଲେ : ସହମତ ହୋଇଥିବା ଗୋଟାଏ କାହାଣୀ ଛଡା ଇତିହାସ ଆଉ କ'ଣ ଅବା ?(What is History but a fable agreed upon ?)



# ଛଦ୍ମବେଶ

ଅନେକ ବର୍ଷ ପୂର୍ବେ ଜଣେ ରାଜା ଥିଲେ । ପ୍ରଜାମାନଙ୍କ ଦୁଃଖ ଓ ଯାତନା ପ୍ରତି ତାଙ୍କର ଆଦୌ ନିଘା ନଥିଲା । କିଛି ଚାଟୁକାର ତଥା ପ୍ରଶଂସକଙ୍କ ଗହଣରେ ରହି ସେ ତାଙ୍କ କର୍ତ୍ତବ୍ୟଟି ଭୁଲି ଯାଇଥିଲେ ପ୍ରାୟତଃ । ରାଜ କର୍ମଚାରୀମାନେ ରାଜାଙ୍କ ଏତାଦୃଶ କାର୍ଯ୍ୟକଳାପର ସୁଯୋଗ ନେଇ ଗାଁଗାଁ ବୁଲି ଧନ, ମାନ ଇତ୍ୟାଦି ଲୁଣ୍ଠନ କରିବା ପାଇଁ ପ୍ରତିନିୟତ ଚେଷ୍ଟିତ ଥିଲେ । ସେମାନେ ଦଳବଦ୍ଧ ହୋଇ ହିଂସ୍ର ଗଧିଆମାନଙ୍କ ପରି ନରୀହ ଗ୍ରାମବାସୀମାନଙ୍କୁ ଆକ୍ରମଣ କରୁଥିଲେ ।

ରାଜ୍ୟରେ ରାଜାଙ୍କର ଜଣେ ମଙ୍ଗଳକାମୀ ଥିଲେ । ସେ ଥିଲେ ରାଜାଙ୍କ ଗୃହ ଦେବତାଙ୍କ ପୂଜକ । ବୟସରେ ସେ ଥିଲେ ବୃଦ୍ଧ । ରାଜାଙ୍କୁ ତାଙ୍କ ଦୋଷ ସଂପର୍କରେ ସେ ଅବଗତ କରାଇବାକୁ ଚାହୁଁଥିଲେ ବି ଚାଟୁକାରମାନଙ୍କ ଚକ୍ରବ୍ୟୂହ ଭେଦ କରି ସେଠାରେ ପହଞ୍ଚିବା ତାଙ୍କଦ୍ୱାରା ସମ୍ଭବ ହେଉ ନଥିଲା । ଦିନେ ସେଇ ବୃଦ୍ଧ ପୂଜକ, ଚାଟୁକାରମାନେ ରାଜାଙ୍କୁ କହୁଥିବା ଶୁଣିଲେ, : କି ଦିନ କି ରାତି, ପ୍ରଜାଗଣ ଆପଣଙ୍କ ଗୁଣ କୀର୍ତ୍ତନ କରିବାରେ ବ୍ୟସ୍ତ ।'' ରାଜାଙ୍କୁ ଏପରି ଚାଟୁବାକ୍ୟ କହି ଯେତେବେଳେ ସେମାନେ ଚାଲିଗଲେ ସୁଯୋଗ ଦେଖି ପୂଜକ ରାଜାଙ୍କ ପାଖରେ ପହଞ୍ଚି କହିଲେ : ହେ ରାଜନ୍, ଆପଣଙ୍କ ବନ୍ଧୁମାନେ ଆପଣଙ୍କୁ ଯାହାସବୁ କହିଗଲେ ତାହା ଯଥେଷ୍ଟ ନୁହେଁ । ମାତ୍ର ଆପଣ ଏସବୁ ଜାଣିବା ପାଇଁ ନିଜେ ଛଦ୍ମବେଶରେ ସାରା ରାଜ୍ୟ ପରିଭ୍ରମଣ କରୁ ନାହାଁନ୍ତି କାହିଁକି ?'' ପୂଜକଙ୍କର ଉପଦେଶ ରାଜାଙ୍କ ମନକୁ ବେଶ୍ ଛୁଇଁଲା । ନିଜର ପ୍ରଶଂସା ଲୋକମୁଖରୁ ନିଜ କାନରେ ଶୁଣିବା ପାଇଁ ତାଙ୍କର ଅନୁରୋଧକ୍ରମେ ରାଜା ଓ ପୂଜକ ଦୁହେଁ ବଣିକ ବେଶରେ ରାଜ୍ୟ ପରିଭ୍ରମଣରେ ବାହାରିଲେ ।

ରାଜଧାନୀର ଅନତି ଦୂରରେ ଏକ ପର୍ଣ୍ଣ କୁଟୀରରେ ଜଣେ ବୃଦ୍ଧ ଚିତ୍କାର କରୁଥିବା ଶୁଣି ଦୁହେଁ ସେଇ କୁଟୀରକୁ ଯାଇ ଦେଖନ୍ତି, ବୃଦ୍ଧ ଜଣକ ତାଙ୍କ ପାଦଟିକୁ ଧରି ବିକଳ ହେଉଛନ୍ତି ।

: କ'ଣ ଅସୁବିଧା ହେଲା କି ?' ସେମାନେ ପଚାରିଲେ ।

: ପାଦରେ କଣ୍ଟା ଫୁଟି ଗଲା, ରାଜାଙ୍କ ଯୋଗୁଁ ମୁଁ ଏ ଦଶା ଭୋଗିଲି ।' ବୃଦ୍ଧଟି ଉତ୍ତର ଦେଲା ।

ଛଦ୍ମବେଶୀ ଦୁହେଁ ଆଶ୍ଚର୍ଯ୍ୟ ହେଲେ ବୃଦ୍ଧର ଅଯଥା ରାଜାଙ୍କୁ ଦୋଷାରୋପ କରିବା

ଦେଖି । ସେମାନଙ୍କ ଜିଜ୍ଞାସାର ଉତ୍ତର ଦେବାକୁ ଯାଇ ବୃଦ୍ଧ କହିଲେ : ଆମ ରାଜ୍ୟର ରାଜା ଜଣେ ଅକାଳକୁଷ୍ମାଣ୍ଡ ସଦୃଶ । ନିଜର ଅପାରଗତା ଯୋଗୁଁ ତାଙ୍କ କର୍ମଚାରୀମାନେ ବିଭିନ୍ନ ଗ୍ରାମରେ ପଶି ଲୁଣ୍ଠନ ଓ ଅପହରଣ କରୁଛନ୍ତି । ଗତକାଲି ରାତିରେ ସେମାନେ ମୋ ଗ୍ରାମକୁ ଆସିବେ ବୋଲି ଖବର ପାଇ ମୁଁ ଭୟରେ ଜଙ୍ଗଲକୁ ଚାଲିଯାଇଥିଲି । ଗଲାବେଳେ ସେମାନଙ୍କୁ ହଇରାଣ କରିବା ପାଇଁ କିଛି କଣ୍ଟା ମାଟିରେ ପୋତି ଦେଇଥିଲି ଯଦ୍ଵାରା ଫେରିବା ରାସ୍ତାରେ ସେଇ କଣ୍ଟାମାନଙ୍କର ଆଘାତ ନିଜେହିଁ ପାଇଲି । ଭଲ ରାଜାଟିଏ ଥିଲେ ଏସବୁ ହୋଇଥା'ନ୍ତା କି ?'' ବୃଦ୍ଧ ସେମାନଙ୍କୁ ପଚାରିଲେ । ନିରୁତ୍ତର ହୋଇ ଦୁହେଁ ସେଠାରୁ ଫେରି ଯାଉଯାଉ ଗୋଟିଏ ଜଙ୍ଗଲିଆ ରାସ୍ତାରେ ଜଣେ ଚାଷୀ ମୁଣ୍ଡରେ ହାତ ଦେଇ ବସିଥିବା ସେମାନେ ଦେଖିଲେ ।  କାରଣ ପଚାରନ୍ତେ, ଚାଷୀଟି କହିଲା: ଲଙ୍ଗଳର ଲୁହା ପଶି ମୋର ବଳଦର ଗୋଡ ଖଣ୍ଡିଆ ହୋଇଗଲା, ଏ ଦୁର୍ଭାଗ୍ୟ ପାଇଁ ଆମ ରାଜ୍ୟର ରାଜାହିଁ ଦାୟୀ ।'' ଚାଷୀଟିର କଥା ଶୁଣି ଛଦ୍ମବେଶୀ ପୂଜକ ବିରକ୍ତ ହେଲେ ଏବଂ ତାକୁ ଏହା କେମିତି ସମ୍ଭବ ବୋଲି ପ୍ରଶ୍ନ କରନ୍ତେ, ଚାଷୀଟି କହିଲା : ରାଜାଙ୍କ କର୍ମଚାରୀମାନେ ଆଜି ମୋର ଗ୍ରାମ ଦେଇ ଯାଉଥିବା ସମୟରେ ମୋର ଘରେ ପଶି ଗଲେ । ମୋର ସ୍ତ୍ରୀ ଜମି ଉପରକୁ ଧରି ଆସୁଥିବା ଖାଦ୍ୟକୁ ସେମାନେ ଛଡ଼ାଇ ଖାଇ ଦେଲେ । ତେଣୁ ଠିକ୍ ସମୟରେ ମୋର ସ୍ତ୍ରୀ ଖାଇବା ନେଇ ଆସି ନପାରିବାରୁ ମୁଁ ବାଧ ହୋଇ ଆଉ କିଛି ଅଧିକା ଚାଷ କରିବି ବୋଲି ଅନ୍ୟମନସ୍କ ହୋଇ ହଳ ଯୋଚିଲି ଓ ଫଳସ୍ଵରୂପ ବଳଦମାନଙ୍କ ଗୋଡ଼ରେ ଲୁହା କଣ୍ଟା ପଶି ଗଲା । ରାଜାଙ୍କ ଅପାରଗତା ଯୋଗୁଁ ଏହା ହେଲା ।' ଚାଷୀଠାରୁ ଏ କଥା ଶୁଣି ଗଲାପରେ ରାଜା ସେଠାରୁ ପୂଜକଙ୍କ ସହ ଫେରି ଆସି କ'ଣ ସବୁ ପଦକ୍ଷେପ ନେଲେ ତାହା ସହଜରେ ଅନୁମେୟ ।

ଜାତକ ଗଳ୍ପର ଏଇ କାହାଣୀଟି ମନେ ପଡ଼ିବା ପଛରେ ସଂପ୍ରତି ରୁଷିଆର ରାଜନୈତିକ ଘଟଣାବଳୀହିଁ ପ୍ରଧାନତଃ ଦାୟୀ । ନିକଟରେ ରୁଷିଆର ରାଷ୍ଟ୍ରପତି ବୋରିସ୍ ୟେଲତ୍‌ସିନ୍‌ଙ୍କ ବିରୁଦ୍ଧରେ ପାଞ୍ଚଟି କାରଣ ନେଇ ମହାଭିଯୋଗ ଅଣା ଯାଇଥିଲା ରୁଷିଆର ସଂସଦରେ । ଯଦିଓ ଆମେ ଜାଣୁ ଭଗ୍ନ ସ୍ଵାସ୍ଥ୍ୟ ହେଉ ଅଥବା ନିଜର ଅପାରଗତା ହେଉ-ମାତ୍ର ୟେଲତ୍‌ସିନ୍‌ଙ୍କ ଲୋକପ୍ରିୟତା ଆଗଭଳି ସେ ଦେଶରେ ଆଉ ନାହିଁ । ନିର୍ବାଚିତ ସଦସ୍ୟମାନେ ବି ତାଙ୍କୁ କଟୁ ସମାଲୋଚନା କରିବାକୁ ପଛାଉ ନାହାଁନ୍ତି । ମାତ୍ର ମହାଭିଯୋଗ ସଂକ୍ରାନ୍ତୀୟ ଭୋଟ୍ ଗ୍ରହଣ ବେଳେ ୟେଲତ୍‌ସିନ୍ ପରାଜୟରୁ ବର୍ତ୍ତି ଗଲେ । ଭୋଟ୍ ଗ୍ରହଣ ଶେଷ ହେବାପରେ ସଂସଦର ସଭ୍ୟମାନେ ଯେଉଁ ସଫେଇଟି ଦେଲେ ତାହାର ସାରମର୍ମଟି ହେଲା ଯେ : ୟେଲତ୍‌ସିନ୍‌ଙ୍କ ବିରୁଦ୍ଧରେ ଅଣା ଯାଇଥିବା ମହାଭିଯୋଗର ସମସ୍ତ କାରଣଗୁଡ଼ିକ ଗୁରୁତର ସତ୍ୟ । ମାତ୍ର ସଂସଦମାନେ ଅନୁଭବ କଲେ ଯେ ୟେଲତ୍‌ସିନ୍‌ଙ୍କୁ ଗାଦିଚ୍ୟୁତ କରିବା ପରେ ରାଷ୍ଟ୍ରପତି ନିର୍ବାଚନ ହେବା ଅବଶ୍ୟମ୍ଭାବୀ । ଅଥଚ ସାଧାରଣ ନିର୍ବାଚନ ଆଉ ଗୋଟିଏ ବର୍ଷ ପରେ ହେବ । ମାତ୍ର ଗୋଟିଏ ବର୍ଷ ପାଇଁ ନୂଆ ରାଷ୍ଟ୍ରପତି ନିର୍ବାଚନ ପାଇଁ ରାଜକୋଷରୁ ହଜାର ହଜାର କୋଟି

ଟଙ୍କା ବ୍ୟୟ କରିବା ଅପେକ୍ଷା,ଜଣେ ନିନ୍ଦିତ ତଥା ଅପାରଗ ବ୍ୟକ୍ତିଙ୍କୁ କିଛି କାଳ ପାଇଁ ସହ୍ୟ କରିବା ବିଜ୍ଞତାର ପରିଚାୟକ ହେବ । ଦେଶକୁ ଅଯଥା ଗୋଟିଏ ଆର୍ଥିକ ବିପର୍ଯ୍ୟୟରୁ ରକ୍ଷା କରିହେବ । ଜଣେ ଅପାରଗ ଅପେକ୍ଷା ଦେଶ ଯେ ଅନେକ ବଡ଼ ସେମାନେ ଅନୁଭବ କଲେ । କିନ୍ତୁ ହାୟ, ଭାରତର ବିଜ୍ଞ ସାଂସଦମାନେ ଏଇ ସତ୍ୟଟିକୁ ବୁଝିବାରେ କାହିଁକି ଅକ୍ଷମ ସତରେ ? ଗଣତନ୍ତ୍ରର ସୁରକ୍ଷା ରାଷ୍ଟ୍ରର ମର୍ଯ୍ୟାଦା ଇତ୍ୟାଦି ଆଜି ଧୂଆଁବାଣରେ ପରିଣତ ହୋଇଛି । ସଉତୁଣୀର ବୈଧବ୍ୟ ଆମର କାମ୍ୟ, ସ୍ୱାମୀର ମୃତ୍ୟୁ ପାଇଁ ନିଘା ନାହିଁ । ସେମାନଙ୍କ ପ୍ରତି ଜନସାଧାରଣଙ୍କର କିପ୍ରକାର ମନୋଭାବ ରହିଛି, ଜାଣିବାକୁ ଇଛା କଲେ ଥରଟିଏ ସେମାନେ ଛଦ୍ମବେଶରେ ଲୋକଙ୍କ ପାଖକୁ ଯାଇ ନିଜ ଲୋକପ୍ରିୟତାର ପ୍ରମାଣ ପାଇ ପାରିବେ ବୋଲି ଏ ଲେଖକର ଧାରଣା ।



# ଭୟ

ଓଡ଼ିଆ ସାହିତ୍ୟର ସମାଲୋଚନା ଦିଗଟି ଅତ୍ୟନ୍ତ ଦୁର୍ବଳ ବୋଲି ଅନେକ ସମୟରେ ଶୁଣିବାକୁ ମିଳେ । ଏଇ ଦୁର୍ବଳ ପରମ୍ପରାଟି ସମ୍ପର୍କରେ ମତାମତ ଦେବାକୁ ଯାଇ ସେମାନେ ଆମ ଗଣତାନ୍ତ୍ରିକ ଧାରାରେ ବିରୋଧୀ ଦଳର ଭୂମିକାଟି ସହ ଏହାକୁ ତୁଳନା କରିଥାନ୍ତି । ସେମାନଙ୍କ ମତରେ ଗଣତାନ୍ତ୍ରିକ ରାଜନୀତିରେ ବିରୋଧୀ ଦଳ ସବୁବେଳେ ପ୍ରାୟତଃ ଶାସକ ଗୋଷ୍ଠୀକୁ ନିନ୍ଦା କରିଥାଏ, ଯଦିଓ ଶାସକ ଗୋଷ୍ଠୀର ସମସ୍ତ ନିଷ୍ପତ୍ତି ଅଥବା କାର୍ଯ୍ୟକ୍ରମ ସମାଲୋଚନା ଯୋଗ୍ୟ ନୁହେଁ । ଠିକ୍ ସେଇପରି ସାହିତ୍ୟ ପ୍ରତି ସମାଲୋଚକଟିର ଦାୟିତ୍ୱ ଜଣେ ନିନ୍ଦୁକ ବା ସ୍ତାବକରେ ସୀମିତ ହେବା ଉଚିତ ନୁହେଁ । ଦୁର୍ଭାଗ୍ୟର କଥା, ଆମର ଅଧିକାଂଶ ସାହିତ୍ୟ ସମାଲୋଚକ ପ୍ରଥମେ ସ୍ତାବକ ଅଥବା ନିନ୍ଦୁକ ହେବାକୁ ଶ୍ରେୟସ୍କର ମନେ କରିଥାନ୍ତି ।

ଏଇ ପରମ୍ପରାଟିର ଚେର ମଧ୍ୟ ଅନେକ ତଳକୁ ଯାଇଛି । ସେ ଚେର ହୁଏତ ଇନ୍ଦ୍ରଧନୁ ଓ ବିଜୁଳି ବିବାଦଠାରୁ ଆହୁରି ପ୍ରାଚୀନ ଓ ଗଭୀରତର ମନେହୁଏ । ସେଇ ପରମ୍ପରାକୁ ବଞ୍ଚାଇ ରଖିବା ଲାଗି ଏବେବି ଆପ୍ରାଣ ଉଦ୍ୟମ ଜାରି ରହିଛି ।

କିଛି ବର୍ଷ ତଳେ ଜଣେ ଅଧ୍ୟାପକ ଗୋଟିଏ ସମାଲୋଚନା ପତ୍ରିକାଟିଏ ପ୍ରକାଶ କରିବାର ବ୍ୟବସ୍ଥା କରିଥିଲେ । ପ୍ରଥମେ କେତୋଟି ସଂଖ୍ୟାରେ ଗଠନମୂଳକ ସମାଲୋଚନା ପ୍ରକାଶ କରି ସେ ଖୁବ୍ ଲୋକପ୍ରିୟତା ମଧ୍ୟ ପାଇଲେ । ହଠାତ୍ ତାଙ୍କ ମୁଣ୍ଡରେ ଗୋଟାଏ ଅଜବ ଚିନ୍ତା ପଶିଲା । ସେ ନିଜ ପତ୍ନୀ ଏବଂ କେତେକ ବନ୍ଧୁଙ୍କୁ ବିଶିଷ୍ଟ ସାହିତ୍ୟିକ କରିବାର ସ୍ୱପ୍ନ ଦେଖିଲେ । ଜଣକୁ ବଡ କରି ଦେଖାଇବାକୁ ହେଲେ ତା ଚାରିପାଖର ଲୋକଗୁଡାଙ୍କୁ ଛୋଟ କରି ଦେଖାଇବାର ଆବଶ୍ୟକତାଟିଏ ଥାଏ ବୋଲି ଅଧ୍ୟାପକଙ୍କୁ ଜଣାଥିଲା । ତାହା ହିଁ କଲେ ସେ । ପତ୍ରିକାଟିରେ କିଛି ଲୋକଙ୍କର ସ୍ତବ ଓ ଆଉ କେତେକଙ୍କର ନିନ୍ଦା ଗାନ କରାଗଲା । ଧୀରେ ଧୀରେ ପତ୍ରିକାଟିରେ ଅଧ୍ୟାପକଙ୍କ ପ୍ରାକ୍ତନ ଛାତ୍ରମାନେ ଏଇ ଧାରାକୁ ବଜାୟ ରଖି ଲେଖାମାନ ପ୍ରକଶିତ କଲେ । କିଛି ମାସ ପରେ ଉକ୍ତ ପତ୍ରିକାଟି ପାଠକମାନଙ୍କ ର ବିଶ୍ୱାସନୀୟତା ହରାଇଲା ଓ ପରେ ପରେ ପତ୍ରିକାର ପ୍ରକାଶନ ମଧ୍ୟ ବନ୍ଦ ହୋଇଗଲା ।

ଏଥିରେ କାହାର କିଛି ଲାଭ ହେଲା କି ? ବରଂ ଏଥିଯୋଗୁ ସବୁରି କ୍ଷତି ହେଲା ଏବଂ ସବୁଠୁ ବେଶି କ୍ଷତି ହେଲା ଓଡିଆ ସାହିତ୍ୟର । କାରଣ ସମାଲୋଚନା ହେଉଛି ସାହିତ୍ୟର ସୁଷୁମ୍ନା ନାଡି । ନାଡି ଯେତେବେଳେ ବ୍ୟାଧିଗ୍ରସ୍ତ, ସାହିତ୍ୟ ଆପଣାଛାଏଁ ପଙ୍ଗୁ ହେଇଯିବ ।

ଉକ୍ତ ସମାଲୋଚକମାନେ 'ଆମେ ବଂଚିଛୁ' ବୋଲି ଜାହିର କରିବାକୁ ଯାଇ ଏବେ ବିଭିନ୍ନ ପାଠ୍ୟକ୍ରମ ପୁସ୍ତକ ସବୁର ମାନେ ବହି ସବୁ ଲେଖିବାରେ ବ୍ୟସ୍ତ । ଯେଉଁମାନଙ୍କ ପାଖରେ ଏକଦା ସୁନ୍ଦର ସମ୍ଭାବନାଟିର ସନ୍ଧାନ ମିଳିଥିଲା । ସେଇମାନେ ଏବେ କେତେକ ଶସ୍ତା ପୁସ୍ତକ ପ୍ରକାଶକଙ୍କ ଦୟାରୁ ପ୍ରତିପାଳିତ ହେଉଛନ୍ତି । ମାନେ ବହି ଲେଖି ଅନେକ ଅଧ୍ୟାପକ ନିଜକୁ ବୁଦ୍ଧିଜୀବୀ ଓ ସାହିତ୍ୟିକ ବୋଲି ପରିଚିତ କରିବାକୁ ପଛାନ୍ତି ନାହିଁ ଏହାହିଁ ବିଡମ୍ବନା । ଠିକ୍ ଏଇ କାରଣରୁ ବାଲୁବଜାରସ୍ଥ କେତେକ ପ୍ରକାଶନ ସଂସ୍ଥାର ମାଲିକମାନେ ଲେଖକମାନଙ୍କୁ ସବୁଠୁ ଶସ୍ତା ପରିବା ବୋଲି ଧରି ନିଅନ୍ତି । ସାହିତ୍ୟ ଓ ସାହିତ୍ୟିକର ଉନ୍ନତି କଳ୍ପେ ସମୋନଙ୍କ ଅବଦାନ ଯାହା ଥାଉନା କାହିଁକି ନିଜର ସମୃଦ୍ଧି ପାଇଁ ସେମାନେ ସତତ ତତ୍ପର ଥାଆନ୍ତି, ସେମାନେ ଲେଖକର ମାନସିକ ଧର୍ଷଣ କରି ଚରମ ସୁଖ ପାଇଥାନ୍ତି । ସେଠି ଖୁବ୍ କମ୍ ସମ୍ବେଦନଶୀଳ ପ୍ରକାଶକ ଅଛନ୍ତି-ଯେଉଁମାନେ ସାହିତ୍ୟ ଓ ସାହିତ୍ୟିକର ମର୍ମବେଦନା ଅବଶ୍ୟ ବୁଝନ୍ତି, ମାତ୍ର ସେମାନଙ୍କ ସଂଖ୍ୟା ଖୁବ୍ ଅଳ୍ପ ହୋଇଥିବାରୁ ଏହାର ସୁଦୂରପ୍ରସାରୀ ପ୍ରଭାବ ପ୍ରାୟତଃ ନାହିଁ ।

ସେହି ହେତୁ, ନିଜ ପକେଟରୁ ପଇସା ଖର୍ଚ୍ଚ କରି ଥୋକେ ବହିଗୁଡାଏ ଛାପି ନିଜକୁ ଲେଖକ ବୋଲାଇବା ପାଇଁ ଷ୍ଟାମ୍ପଟିଏ ସିନା ଯୋଗାଡ କରନ୍ତି ମାତ୍ର ଏହାଦ୍ୱାରା ସାହିତ୍ୟର କ'ଣ ଉନ୍ନତି ହୁଏ ? ବହିଟି ଛାପି, ବନ୍ଧୁ ଓ ବରିଷ୍ଠ ଅଫିସରମାନଙ୍କୁ ଖଣ୍ଡିଏ ଏଥିରୁ ଶ୍ରଦ୍ଧା ନିବେଦନ କରି, କିଛି କିଛି ଲେଖକଙ୍କ ଦ୍ୱାରା ଉକ୍ତ ପୁସ୍ତକର ସମୀକ୍ଷା ଗୁଡିଏ ଲେଖି ବିଭିନ୍ନ କାଗଜରେ ଛପାଇବା ପାଇଁ ଯୋଗାଡ କରନ୍ତି । ଏସବୁ କରୁ କରୁ ସେମାନେ ସୃଜନ କର୍ମ ପ୍ରତି ବିଶେଷ ଗୁରୁତ୍ୱ କିମ୍ବା ଧ୍ୟାନ ଦିଅନ୍ତି ନାହିଁ ।

ଅବଶ୍ୟ କିଛି ବର୍ଷ ପରେ ସେଇ ଲେଖକମାନଙ୍କର ମୋହ ଭଙ୍ଗ ଘଟିବାବେଳକୁ ସମୟ ଅତିକ୍ରାନ୍ତ ହୋଇ ଯାଇଥାଏ ଓ ନିଜସ୍ୱ ସମସ୍ୟାରେ ସେମାନେ ଆକ୍ରାନ୍ତ ହୋଇ ସାହିତ୍ୟକୁ ଗୋଟିଏ ଅସାହିତ୍ୟିକ କାର୍ଯ୍ୟ ବୋଲି କହିବାକୁ ପଛାନ୍ତି ନାହିଁ ।

ଏସବୁ ଘଟେ ଗୋଟିଏ ଉତ୍ତମ ସମାଲୋଚନା ପରମ୍ପରାର ଅଭାବରୁ । ଗୋଟିଏ ଭଲ ସମାଲୋଚକ, ଭଲ ସାହିତ୍ୟିକଟିଏ ଗଠନ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନେଇଥାଏ । ଅନ୍ଧାରରେ ଚାଲୁଥିବା ଲେଖକ ପାଇଁ ସେ ହେଉଛି ଆଲୋକ ବର୍ତ୍ତିକା, ଯଦିଓ ଜଣେ ଅନ୍ୟଜଣକୁ ଶତ୍ରୁ ପକ୍ଷର ବ୍ୟକ୍ତି ଭାବେ ମାନସିକ ସ୍ତରରେ ଅନ୍ତର୍ଭୁକ୍ତ କରିଥାଏ । ତେବେ ସେମାନଙ୍କ ଯୁଦ୍ଧରେ ପରାଜୟ କାହାରି ହୁଏ ନାହିଁ । ଜଣେ ନିଜକୁ ଶିକାରୀ ଓ ଅପରପକ୍ଷକୁ ଶିକାରଟିଏ ମନେ କରେ । ଗପଟିଏ କହେ, ଥରେ ଗୋଟିଏ ଅଭିଜ୍ଞ ଶିକାରୀ ଗୋଟିଏ ବଡ ବନ୍ଧୁକ ନେଇ ଜଙ୍ଗଲକୁ ଶିକାର ପାଇଁ ଯାଇଥାନ୍ତି । ସୌଭାଗ୍ୟକୁ ଖୁବ୍ ନିକଟରୁ ବାଘଟିଏ ଦେଖି ଗୁଳି ଫୁଟାଇବା ଲାଗି ଉଦ୍ୟତ ହୁଅନ୍ତେ ବାଘଟି ଶିକାରୀକୁ ପ୍ରତି ଆକ୍ରମଣ କରିବା ଉଦ୍ଦେଶ୍ୟରେ

ଏକ ଦୀର୍ଘ ଲମ୍ଫ ପ୍ରଦାନ କଲା । ଫଳତଃ ଶିକାରୀର ଗୁଳି ବାଘ ଦେହରେ ବାଜିଲାନାହିଁ ଏବଂ ଆବଶ୍ୟକତା ଅପେକ୍ଷା ଅଧିକ ଦୀର୍ଘ ଲମ୍ଫ ପ୍ରଦାନ କରିଥିବାରୁ ବାଘଟି ଶିକାରୀର କୌଣସି କ୍ଷତି ସାଧନ ମଧ୍ୟ କରିପାରି ନ ଥିଲା । ପରବର୍ତ୍ତୀ ସମୟରେ ଯେତେବେଳେ ଶିକାରୀଟି ପୁନଶ୍ଚ ସେଇ ଜଙ୍ଗଲକୁ ଶିକାର ଉଦ୍ଦେଶ୍ୟରେ ଯାଇଛି ଛୋଟ ବନ୍ଧୁକଟିଏ ଧରି (ଯାହାର ଅଭାବରେ ପ୍ରଥମଥର ସେ ଶିକାର ପାଇବାରେ ବିଫଳ ହୋଇଥିଲେ ), ସେ ଦେଖିଛି ଯେ, ବାଘଟି ସେଠାରେ ଛୋଟ କୁଦା ମାରିବା ପାଇଁ ଅଭ୍ୟାସ କରୁଛି କାରଣ ଏଇ ଛୋଟ କୁଦା ନ ମାରିବା ଯୋଗୁ ଦିନେ ସେ ତା'ର ପ୍ରତିପକ୍ଷକୁ ଠିକ୍ ଭାବେ ଜବାବ ଦେଇପାରି ନ ଥିଲା । ଲେଖକ ଓ ସମାଲୋଚକର ଭୂମିକାଟି ଅନୁରୂପ ଭାବେ ବାଘ ଓ ଶିକାରୀର ସମ୍ପର୍କ ପରି ।

କେରଳର ବିଶିଷ୍ଟ ଲେଖକ ଏମ.ଟି. ବାସୁଦେବନ୍ ନାୟାର ନିକଟରେ ଜଣେ ବନ୍ଧୁଙ୍କୁ କହୁଥିଲେ -ଏବେ ବି ଗଳ୍ପଟିଏ ନିଜର ପ୍ରକାଶିତ କଲା ବେଳେ ସେ କେରଳର ସମାଲୋଚକଙ୍କୁ ଖୁବ୍ ଭୟ କରନ୍ତି । କାରଣ କେରଳର ସମାଲୋଚକମାନେ ଖୁବ୍ ନିର୍ଦ୍ଦୟ ଭାବେ କଲମ ଚଳାଇଥାନ୍ତି । ଏ ଭୟରୁ ନିକଟରେ ସ୍ୱର୍ଗାରୋହଣ କରିଥିବା ବିଶିଷ୍ଟ ଲେଖକ ଟି.ଶିବଶଙ୍କର ପିଲାଇ ମଧ୍ୟ ମୁକ୍ତ ନ ଥିଲେ ବୋଲି ସେ ସ୍ୱୀକାର କରିଛନ୍ତି ଏବଂ ସେଇ କାରଣରୁ ଆଜି କେରଳର ସାହିତ୍ୟ ଖୁବ୍ ଉନ୍ନତ ହେଇପାରିଛି ବୋଲି ସେ ଆଶ୍ୱସ୍ତ ହୁଅନ୍ତି ।

ଓଡିଶାରେ କେବେ ସେ ସମୟ ଆସିବ ? ଲେଖକମାନେ ସେମାନଙ୍କ କୃତିର ସମାଲୋଚନାଟିଏ ପ୍ରକାଶ କରିବା ଲାଗି ତଥାକଥିତ ସମାଲୋଚକଙ୍କୁ ଅଳି କରିବା ପରିବର୍ତ୍ତେ ସେମାନଙ୍କୁ ଭୟ କରିବା ଆରମ୍ଭ କରିବେ କେବେ ? କାରଣ ସେଇ ଭୟଟି ହିଁ ଆମ ସାହିତ୍ୟ ପାଇଁ ଶୁଭଙ୍କର ହେବ ।



# ଜୀବନକାଳ

ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମୟକୁ ମଣିଷର ଜୀବନକାଳ ଭାବେ ସାଧାରଣତଃ ଧରାଯାଇଥାଏ । ତେବେ ଏହାକୁ ଜୀବନର ମାନଦଣ୍ଡ ଭାବେ ଅଧିକାଂଶ ଗ୍ରହଣ କରନ୍ତି ନାହିଁ । ମଣିଷର ଜୀବନ କେବଳ ବର୍ଷ, ମାସ, ଦିନ ଅଥବା ଦଣ୍ଡ ଲିତାରେ ସୀମାବଦ୍ଧ ନୁହେଁ । ତା'ର କର୍ମ ହିଁ ତା'ର ମାନଦଣ୍ଡ ବୋଲି ମଧ୍ୟ ଆମକୁ ଜଣାଇ ଦିଆଗଲା । ଓଡ଼ିଆ ମାନଦଣ୍ଡଟିର ଇଂରାଜୀ ଅନୁରୂପ ହେଉଚି 'ଷ୍ଟାଣ୍ଡାର୍ଡ' । ପ୍ରତିଟି ଜୀବନର ମାନଦଣ୍ଡ ବା ଷ୍ଟାଣ୍ଡାର୍ଡ ନିରୂପଣ ପାଇଁ ଯଦିଓ କୌଣସି ବୈଜ୍ଞାନିକ ଉଦ୍ଭାବନ ଏ ଯାବତ୍ ହୋଇନାହିଁ ତେବେ ଗୋଟିଏ ଜୀବନର ସଫଳତା ବା ବିଫଳତା ତଉଲିବାରେ ଆମର ଅସୁବିଧା ହୋଇନାହିଁ ।

ଅନେକ ବ୍ୟକ୍ତିଗତ ଜୀବନର ସଫଳତାକୁ ମାନଦଣ୍ଡ ଭାବେ ଗ୍ରହଣ କରିଥାନ୍ତି । ନିଜ ଚାକିରିର ପ୍ରମୋଶନ, ସହରରେ ଘର, ଗାଡି ଅଥବା ବ୍ୟାଙ୍କର ଜମାଖାତାକୁ ମଣିଷର ମାନଦଣ୍ଡ ଭାବେ ସେମାନେ ଗ୍ରହଣ କରିନ୍ତି । ମାତ୍ର ଯେଉଁମାନେ ଏସବୁ କରିବାରେ ବିଫଳ ହୁଅନ୍ତି ଅଥବା କରିପାରନ୍ତି ନାହିଁ ସେମାନେ ଯେ, ଜୀବନ ଯୁଦ୍ଧରେ ହାରିଯାଇଛନ୍ତି ଏମିତି ଗୋଟେ ଧାରଣା ହୁଏ ସେମାନଙ୍କର । ମାତ୍ର ଜୀବନର 'ମାନଦଣ୍ଡ' ତଉଲିବାରେ ଏ ସବୁର କୌଣସି ଆବଶ୍ୟକତା ନାହିଁ । ଏପରି କି ଯେଉଁମାନେ ଜୀବନର ସଫଳତାକୁ ବୟସର ଦୀର୍ଘତା ସହ ଯୋଡନ୍ତି ସେମାନଙ୍କୁ ଇମରସନଙ୍କ ସେଇ ଉକ୍ତିଟି ମନେ ପକାଇବାକୁ ପଡିବ : ଜଣେ ବ୍ୟକ୍ତିର ଯଦି ଆଉ କିଛି ଗଣିବାକୁ ନ ଥାଏ ତେବେ ସେ ପର୍ଯ୍ୟନ୍ତ ଆମେ ତା'ର ବୟସକୁ ମଧ୍ୟ ଗଣନା କରୁନାହିଁ (We don't count a man's years, untill he has nothing else to count) ଯେଉଁମାନେ ଶତାୟୁ ହେବା ଜୀବନର ଗୋଟିଏ ସଫଳତା ବୋଲି ମନେକରନ୍ତି ସେମାନଙ୍କୁ ପୁଣିଥରେ ଇତିହାସରୁ ଧର୍ମପଦ ଓ ଆଲେକଜାଣ୍ଡର ଏବଂ ପୁରାଣ ପ୍ରସିଦ୍ଧ ପ୍ରହଲ୍ଲାଦ କଥା ସ୍ମରଣ କରାଇବି । ତେଣୁ, ଗୋଟିଏ କଥା ଏବେ ସ୍ପଷ୍ଟ ହେଉଚି ଜୀବନର ସଫଳତା ପାଇଁ ବୟସକୁ ଆମେ ଦାୟୀ କରିପାରିବା ନାହିଁ ।

ଆମ ଗହଣରେ ଏବେ ବି ଶତାୟୁ ଅଛନ୍ତି । ଗତବର୍ଷ ପରିସଂଖ୍ୟାନରୁ ଜଣାଯାଏ ସମଗ୍ର ଇଂଲଣ୍ଡରେ ଅନ୍ୟୁନ ଆଠ ହଜାର ବ୍ୟକ୍ତି ଥିଲେ ଯାହାଙ୍କ ବୟସ ଶହେରୁ ଅଧିକ । ଉତ୍ତମ ଖାଦ୍ୟ ଓ ପରିବେଶ ତଥା ଆତ୍ମ ସଂଯମ ହିଁ ଦୀର୍ଘ ଜୀବନର ଚାବିକାଠି । ଶତାୟୁମାନଙ୍କ ପ୍ରତି ଆମର ଶ୍ରଦ୍ଧା ରହିବା ସ୍ୱାଭାବିକ । ମାତ୍ର କେତେଜଣ ଶତାୟୁ ନିଜ ଜୀବନକୁ ଅର୍ଥପୂର୍ଣ୍ଣ କରିବା ସହ ନିଜର ସମାଜିକ କର୍ତ୍ତବ୍ୟଟି ନିର୍ବାହ କରିଥାନ୍ତି ?

ପ୍ରସଙ୍ଗକ୍ରମେ ମନକୁ ଛାଏଁ ଆସିଯାଏ ବିଶିଷ୍ଟ ଲେଖକ ନୀରଦ ଚୌଧୁରୀଙ୍କ କଥା । ଜୀବନକୁ ଜାଣିଁ ଶିଖିବାର କୌଶଳଟି ତାଙ୍କୁ ବେଶ ଜଣା । ଶହେ ଦୁଇବର୍ଷ ବୟସରେ ଏବେ ବି ମାନସିକ ସ୍ତରରେ ସେ କର୍ମଠ ଓ ଲେଖନୀ ଚାଳନାରେ ବ୍ୟସ୍ତ । ଗଭୀର ଅଧ୍ୟୟନ ଓ ଜୀବନାନ୍ୱେଷା ହିଁ ତାଙ୍କ ବ୍ୟକ୍ତିତ୍ୱର ବିଶିଷ୍ଟ ଦିଗ । ତାଙ୍କୁ ଜୀବନରେ ଭେଟିଥିବା ବ୍ୟକ୍ତିମାନଙ୍କର ଅନୁଭୂତି ବର୍ଣ୍ଣନା କାଗଜମାନଙ୍କରୁ ପଢ଼ି ତାଙ୍କ ସଂପର୍କରେ ମଧ୍ୟ ଆକଳନ କରିହୁଏ । ଗୋଟିଏ ଘଟଣା ଏଠି କହିବା ପ୍ରାସଙ୍ଗିକ ହେବ - ଥରେ ବିଶିଷ୍ଟ ଫଟୋଗ୍ରାଫର ଜିତେନ୍ଦ୍ର ଆର୍ଯ୍ୟ ଲଣ୍ଡନରେ ରହୁଥିବା ସମୟରେ ତାଙ୍କ ଶଶୁର ଝିଅ ଜ୍ୱାଇଁଙ୍କୁ ଭେଟିବା ପାଇଁ ସେଠାକୁ ଗଲେ । ଜିତେନ୍ଦ୍ରଙ୍କ ଶଶୁର ଭାରତର ଜଣେ ବିଶିଷ୍ଟ ଭବିଷ୍ୟତବକ୍ତା ଏବଂ ସେତେବେଳେ ସେ ଇଂରାଜୀ ସାପ୍ତାହିକ 'ଦି ଇଲୁଷ୍ଟ୍ରେଟେଡ ଉଇକି'ରେ ପ୍ରତି ସପ୍ତାହରେ ରାଶିଫଳ ପ୍ରକାଶ କରୁଥାନ୍ତି । ଶଶୁରଙ୍କ ଆଗମନକୁ ଟିକେ ଅଧିକ ମଧୁର କରିବା ଲାଗି ଦିନେ ସନ୍ଧ୍ୟାରେ ଭୋଜିର ବ୍ୟବସ୍ଥା କରିଥାନ୍ତି ଶ୍ରୀ ଆର୍ଯ୍ୟ । ଭୋଜିରେ ଉପସ୍ଥିତ ରହିବାକୁ ସେ ଅନୁରୋଧ କରିଥାନ୍ତି ନୀରଦ ଚୌଦୁରୀଙ୍କୁ । ଶ୍ରୀ ଚୌଧୁରୀ ମଧ୍ୟ ତାଙ୍କ ଅନୁରୋଧ ରକ୍ଷା କରିଥାନ୍ତି ।

କିନ୍ତୁ ଏ ଘଟଣାରେସବୁଠୁ ବେଶି ଅସ୍ଥିର ଥା'ନ୍ତି ଶ୍ରୀମତୀ ଆର୍ଯ୍ୟ । ଯଦିଓ ଅତିଥିମାନଙ୍କ ସତ୍କାର ପାଇଁ ସେ ସବୁପ୍ରକାରର ବନ୍ଦୋବସ୍ତ କରିଥା'ନ୍ତି । ଖାଦ୍ୟ ପରିବେଷଣ ଠାରୁ ଆରମ୍ଭ କରି ସାଜସଜ୍ଜା ପର୍ଯ୍ୟନ୍ତ କୌଣସିଟିରେ ତ୍ରୁଟି ନ ରଖିବା ପାଇଁ ଚେଷ୍ଟା କରୁଥାନ୍ତି । ମାତ୍ର ଶ୍ରୀ ନୀରଦ ଚୌଧୁରୀଙ୍କ ଆଗମନ କଥା ମନେ ପକାଇ ସେ ଏକଦମ ଡରିଯାଇଥାନ୍ତି । କାରଣ ଶ୍ରୀ ଚୌଧୁରୀ ଜଣେ 'ଏକଶିଂଘା' ଭାବେ ଖୁବ୍ ବଦନାମ ଥାଏ ତାଙ୍କର । କ୍ଷଣକୋପି ଏବଂ ଅନ୍ୟକୁ ଅପମାନିତ କରିବା ଭଳି ତାଙ୍କ ଅଭ୍ୟାସ ପାଇଁ ତାଙ୍କୁ ପ୍ରାୟତଃ ସମସ୍ତେ ଡରିଥା'ନ୍ତି । ଏ ସବୁ ସତ୍ତ୍ୱେ ଶ୍ରୀ ଚୌଧୁରୀଙ୍କ ଜ୍ଞାନ ଓ ଧୀଶକ୍ତି ପାଇଁ ସେ ସବୁରି ଦ୍ୱାରା ପ୍ରଶଂସିତ ହୋଇଥାନ୍ତି ।

ନିର୍ଦ୍ଧାରିତ ସମୟରେ ସେଦିନ, ଶ୍ରୀ ଚୌଧୁରୀ ଉକ୍ତ ସଂଧ୍ୟା ଆସରକୁ ଆସିଲେ । ଶ୍ରୀ ଓ ଶ୍ରୀମତୀ ଆର୍ଯ୍ୟ ପରିଚୟ କରାଇଦେଲେ ଶଶୁରଙ୍କ ସହିତ ଅର୍ଥାତ୍ ଶ୍ରୀମତୀ ଆର୍ଯ୍ୟଙ୍କ ବାପାଙ୍କ ସହିତ । ଶ୍ରୀ ଚୌଧୁରୀଙ୍କ ଅଭ୍ୟାସ ସବୁକଥାରେ ପ୍ରଶ୍ନ ପଚାରିବା । ଉଦାହରଣ ସ୍ୱରୂପ ବସିଥିବା ସୋଫାରେ ବ୍ୟବହୃତ କାଠ କେଉଁ କାଳର, କାରୁକାର୍ଯ୍ୟ କେଉଁ ଶିଳ୍ପୀଙ୍କ ଦ୍ୱାରା ପ୍ରଭାବିତ ସେ ସବୁର ଉତ୍ତର ପାଇଁ ସେ ଅନ୍ୟମାନଙ୍କୁ ବଡ ଅସୁବିଧାରେ ପକାନ୍ତି । ଦୈବାତ୍ ସେଦିନ ଶ୍ରୀ ଚୌଧୁରୀଙ୍କୁ ନିଜ ଶଶୁରଙ୍କ ସହ ପରିଚୟ କରାଇ ଦେବା ସମୟରେ ଶ୍ରୀ ଆର୍ଯ୍ୟ ପ୍ରକାଶ କରିଦେଲେ ଯେ, ତାଙ୍କ ଶଶୁର ହେଉଛନ୍ତି ଜଣେ ଭଲ ଭବିଷ୍ୟତ ବକ୍ତା ।

'ମୁଁ ଗଣନା ବିଦ୍ୟାରେ ବିଶ୍ୱାସ ରଖେ ନାହିଁ' ହଠାତ୍ ଶ୍ରୀ ଚୌଧୁରୀ ମନ୍ତବ୍ୟ ଦେଲେ । ସେଇଠୁ ଆରମ୍ଭ ହେଲା ଯୁକ୍ତି, ପ୍ରତିଯୁକ୍ତି । କଥା ପ୍ରସଙ୍ଗରେ ଶ୍ରୀ ଚୌଧୁରୀ ଏଥର ଶ୍ରୀ ଆର୍ଯ୍ୟଙ୍କ ଶଶୁରଙ୍କୁ ବ୍ରହ୍ମାସ୍ତ୍ର ପ୍ରୟୋଗ କଲେ : ଧରନ୍ତୁ ମୁଁ ଯେଉଁ ସମୟ ତିଥି ଓ ଲଗ୍ନରେ ଜନ୍ମ ହେଇଚି

ଠିକ୍ ସେଇ ମୁହୂର୍ତ୍ତ, ତିଥି ଓ ଲଗ୍ନରେ ଯଦି ଗୋଟିଏ କୁକୁର ଛୁଆ ଜନ୍ମ ହୋଇଥାନ୍ତା ସେ କ'ଣ ମୋ ଭଳି ଲେଖକଟିଏ ହୋଇପାରିଥାନ୍ତା ?'

ଏକଥା ଶୁଣି ଶ୍ରୀ ଆର୍ଯ୍ୟଙ୍କ ଶଶୁର ଟିକେ ମୁରୁକି ହସିଲେ ଓ ମୁଣ୍ଡ ନାଡିଲେ : ନିଶ୍ଚିତ ଭାବେ ସେ ଲେଖକଟିଏ ହେଇପାରି ନ ଥା'ନ୍ତା ମାତ୍ର ଆପଣଙ୍କ ପରି ସବୁବେଳେ ବକ୍ ବକ୍ ହେଉଥା'ନ୍ତା ।' ମନ୍ତବ୍ୟ ଶୁଣିବା ପରେ ପାର୍ଟି ଶେଷ ପର୍ଯ୍ୟନ୍ତ ଶ୍ରୀ ଚୌଧୁରୀ ଚୁପ୍ ରହିଥିଲେ ସେଦିନ ।

ବୟସ୍କ ଲେଖକମାନଙ୍କ ସମ୍ପର୍କରେ ଆଉ ଏକ ଦୁର୍ଭାଗ୍ୟ କଥା ହେଉଚି-ଅନେକଙ୍କର ଆଉ କିଛି ନୂଆ କହିବା ଲାଗି ନ ଥିଲେ ବି ଯନ୍ତ୍ରବତ୍ ସେମାନେ ଲେଖିଚାଲିଥା'ନ୍ତି । ମରିସାରିବା ପରେ ବି ସେମାନେ ବଞ୍ଚିବାର ଅଭିନୟ କରନ୍ତି । ଗୋଟିଏ ଲେଖକର ଜୀବନ କାଳ କେତେଦିନର ? ସେଇଥି ପାଇଁ ବିଶିଷ୍ଟ ଗାଳ୍ପିକ 'ଓ ହେନେରି' ତାଙ୍କ ରଚିତ 'ଗିଫ୍ଟ ଅଫ ଦି ମାଗି' ଗଳ୍ପରେ ଲେଖିଛନ୍ତି : ''କିଛିକାଳ ଦୀର୍ଘଶ୍ୱାସ ଓ ହସର ସମାହାର ହିଁ ଜୀବନ ଏବଂ ଦୀର୍ଘଶ୍ୱାସ ସେଠି ଅଧିକାର ଜମାଏ'' (Life is made up of sobs, sniffles and smiles, with sniffles predominating)



# ନୀତି ଓ ରାଜନୀତି

**କି**ଛିଦିନି ତଳେ ଲୋକସଭାରେ କେନ୍ଦ୍ର ସରକାରଙ୍କ ପ୍ରତି ଆସିଥିବା ଅନାସ୍ଥା ପ୍ରସ୍ତାବ ସମ୍ପର୍କରେ ବିତର୍କ ପରେ ଯେଉଁ ଭୋଟ ପ୍ରଦାନ କାର୍ଯ୍ୟକ୍ରମ ହେଲା ଦେଶବାସୀ ତାହା ଦୂରଦର୍ଶନ ଜରିଆରେ ଦେଖିଛନ୍ତି । ଏଇ ଭୋଟଦାନ ଜନିତ ବିତର୍କର ମୁଖ୍ୟବିନ୍ଦୁ ଥିଲେ ଜନୈକ ମୁଖ୍ୟମନ୍ତ୍ରୀ ଯିଏ କିଛିଦିନ ତଳେ ଲୋକସଭାର ସଦସ୍ୟ ଥିଲେ ଏବଂ ପରେପରେ ତାଙ୍କ ଦଳର ମୁଖ୍ୟଙ୍କ ନିର୍ଦ୍ଦେଶାନୁଯାୟୀ ସେ ଯଦିଓ ମୁଖ୍ୟମନ୍ତ୍ରୀ ପଦବୀ ପାଇଲେ, ସେତେବେଳେ ସେ ଲୋକସଭା ପଦବୀରୁ ଓହରି ଯାଇନଥିଲେ । ଲୋକସଭାରେ ସେ ଭୋଟ ଦେଇପରିବେ କି ନାହିଁ ବିତର୍କର ଅବସାନ କରିବାକୁ ଯାଇ ବାଚସ୍ପତି ମହୋଦୟ ରାୟ ଦେଲେ -ଭୋଟ୍ ଦେବା କିମ୍ବା ନ ଦେବା ସଦସ୍ୟଙ୍କ ବିବେକ ଉପରେ ନିର୍ଭର କରୁଛି । ଅବଶ୍ୟ ଉକ୍ତ ମୁଖ୍ୟମନ୍ତ୍ରୀ 'ମୋ ଦଳର ବିବେକ ହେଉଚି ମୋ ବିବେକ' କହି ପୁଣିଥରେ ବିତର୍କର କେନ୍ଦ୍ରବିନ୍ଦୁ ହୋଇପଡ଼ିଛନ୍ତି । ଅନେକ ବରିଷ୍ଠ ନେତା ତାଙ୍କ ଭୋଟ୍ ପ୍ରଦାନକୁ ଅନୈତିକତା ବୋଲି ଅଭିହିତ କରିଛନ୍ତି । ପ୍ରକାଶଥାଉକି ଏହି ଜନନେତା ମୁଖ୍ୟମନ୍ତ୍ରୀ ହେବାପୂର୍ବରୁ ଯେପରି ଭାବେ ଲୋକପ୍ରିୟ ଥିଲେ, ସେଇ ଲୋକପ୍ରିୟତାରେ ଏବେ ଭଟ୍ଟା ପଡ଼ିଯାଇଛି ବୋଲି କୁହାଯାଉଛି । ସେସବୁ ବିତର୍କରେ ପଶିବା ଲାଗି ଏ ଲେଖକର ଆଗ୍ରହ ନାହିଁ । ମାତ୍ର 'ରାଜନୀତି' ସହିତ 'ନୈତିକତା'କୁ ନେଇ ଆଲୋଚନା ହେଉଥିବାରୁ -ଏଇ ଆଲୋଚନାର ଆବଶ୍ୟକତା ପଡ଼ିଲା । ଆମେ ଜାଣୁଁ, ସାଂପ୍ରତିକ ରାଜନୀତି ସହିତ ନୈତିକତାର ସଂପର୍କ ଏବେ ଗୋଟିଏ ଗଣିକା ସହ ଜଣେ ସନ୍ୟାସୀର ସମ୍ବନ୍ଧ ପରି । ମନେପଡୁଛି ଗପଟିଏ । ଥରେ ଜଣେ ବିବାହିତ ଯୁବକ ନିଜର ପତ୍ନୀଙ୍କୁ ହତାଦର କରି ଗୋଟିଏ ବିଟପୀ ନାରୀର ପ୍ରେମରେ ବୁଡି ଗଲେ । ନିଜ ଘରର ସୁନ୍ଦର ପରିବେଶ ଓ ପତ୍ନୀଙ୍କ ଦ୍ୱାରା ପ୍ରସ୍ତୁତ ସ୍ୱାଦିଷ୍ଟ ଭୋଜନ ତାଙ୍କୁ ଆଦୌ ଆକୃଷ୍ଟ କରି ପାରୁନଥିଲା । କ୍ରମଶଃ ସେ ନିଜ ପତ୍ନୀଙ୍କୁ ଭୁଲିଯିବାକୁ ଲାଗିଲେ ଓ ସମୟ ଆସିଲା ଯେତେବେଳେ ସେ ନିଜ ଘରକୁ ମଧ୍ୟ ଆସିବାକୁ ପସନ୍ଦ କଲେ ନାହିଁ ଏବଂ ଉକ୍ତ ବିଟପୀ ନାରୀର ବାହୁ ତଳେ ଆଶ୍ରୟ ନେବାକୁ ଶ୍ରେୟସ୍କର ମନେ କଲେ । ଘଟଣାକ୍ରମେ ଦିନେ ତାଙ୍କର ଜଣେ ଘନିଷ୍ଠ ବନ୍ଧୁଙ୍କ ସହ ସାକ୍ଷାତ୍ ହେଲା । ସେ ତାଙ୍କର ଶୁଭେଚ୍ଛୁ ମଧ୍ୟ ଥିଲେ । ଯୁବକଙ୍କ ଦୂରାବସ୍ଥା କଥା ତାଙ୍କୁ ଜଣାଥାଏ । ସେ ତାଙ୍କର ବନ୍ଧୁଙ୍କୁ ଉକ୍ତ ବିଟପୀ ନାରୀ ପାଖକୁ ନଯିବା ପାଇଁ ପ୍ରବର୍ତ୍ତାଇଲେ । ମାତ୍ର ବନ୍ଧୁ ଏ କଥା ଶୁଣିଲେ ନାହିଁ ଏବଂ ନାରୀ ଜଣକ ଅତ୍ୟନ୍ତ ସୁନ୍ଦରୀ ଓ ମେଳାପୀ ବୋଲି ପ୍ରତିଯୁକ୍ତି କଲେ । ଯୁବକଙ୍କ କଥା ଶୁଣି ବନ୍ଧୁ ଜଣକ କହିଲେ : ସେଇ ନାରୀଟିକୁ ପରିତ୍ୟାଗ କରିବା ପାଇଁ ଗୋଟାଏ ବିଶିଷ୍ଟ କାରଣ ଅଛି ।

: କି କାରଣ ? ଯୁବକ ତା'ର ବନ୍ଧୁକୁ ପଚାରିଲା ।

: ମୁଁ ତାକୁ ଜାଣେ, ସେଇ ନାରୀ ଅତ୍ୟନ୍ତ ଦୁରାରୋଗ୍ୟ ଓ ସଂକ୍ରାମକ ରୋଗରେ ପୀଡ଼ିତ । ତୁମେ ତା'ର ଶରୀରକୁ ଟିକିନିକି ପରୀକ୍ଷା କଲେ ଏକଥା ଜାଣିପାରିବ । ଏକଥାବି ମନେରଖ- 'ତୁମେବି ସେଇ ରୋଗରେ ଅଳ୍ପଦିନରେ ଆକ୍ରାନ୍ତ ହେବ ।' ଯୁବକର ବନ୍ଧୁ ଏକା ନିଃଶ୍ୱାସରେ କହିଲା ।

ବନ୍ଧୁର ଏତାଦୃଶ ସଫେଇ ଶୁଣି ଯୁବକଟି ସେଇ ବିଟପୀ ନାରୀ ପାଖକୁ ଗଲା ଏବଂ ପରୀକ୍ଷା କରି ଜାଣିଲା ଯେ ବନ୍ଧୁ ଆରୋପ କରିଥିବା ଘଟଣାଟି ସଂପୂର୍ଣ୍ଣ ସତ୍ୟ । ପରବର୍ତ୍ତୀ ଘଟଣା ସହଜରେ ଅନୁମାନ କରାଯାଇପାରେ । ଯୁବକଟି କାଳକ୍ରମେ ଉକ୍ତ ବିଟପୀ ନାରୀ ପ୍ରତି ଘୃଣା ଭାବ ପ୍ରଦର୍ଶନ କରିଛି । 'ଅନୈତିକତା' ଛାଡ଼ି ସେ 'ନୈତିକତା'କୁ ଗ୍ରହଣ କରିଛି । ଅବଶ୍ୟ ଏ କାହାଣୀ ଶୁଣି କୌଣସି ରାଜନୈତିକ ବ୍ୟକ୍ତି ହଠାତ୍ ନୀତିବାନ୍ ହୋଇ ଉଠିବ, ଏ ବିଶ୍ୱାସ ଏ ଲେଖକ ଆଦୌ ରଖି ନାହିଁ । ରାଜନୈତିକ ବ୍ୟକ୍ତିଙ୍କୁ 'ସ୍କାଉଣ୍ଡ୍ରେଲ୍' ବୋଲି ଯଦିଓ କୁହାଯାଇନାହିଁ ତଥାପି ସ୍କାଉଣ୍ଡ୍ରେଲ୍‌ର ଶେଷ କାର୍ଯ୍ୟ ରାଜନୀତି ବୋଲି ଆମେ ଅନେକ ଆଗରୁ ଜାଣିଛୁ । ଇଂରାଜୀ ଆଭିଧାନିକ ଅର୍ଥରେ ଯେଉଁମାନଙ୍କର ନୈତିକତା ଓ ବିବେକ ନାହିଁ ତାକୁ 'ସ୍କାଉଣ୍ଡ୍ରେଲ' କୁହାଯାଇଥାଏ । ସେଇ ଦୃଷ୍ଟିରୁ ରାଜନୀତି କରିବା 'ସ୍କାଉଣ୍ଡ୍ରେଲ'ର ଶେଷ କାମ ନହୋଇ ପ୍ରଥମ କାମ କହିଁକି ନହେବ ବୋଲି କେତେକ ବୁଦ୍ଧିଜୀବୀ ପରିହାସ କରିଥା'ନ୍ତି ।

ପୁରାଣ ଓ ମହାଭାରତରୁ ଆମେ ଜାଣିଛୁ ଯେ କୌରବ ଓ ପାଣ୍ଡବମାନଙ୍କ ମଧ୍ୟରେ ଦିନବେଳେ ଘମାଘୋଟ ଲଢ଼େଇ ହେଉଥିଲା ଏବଂ କୌରବ ପକ୍ଷରୁ କୌଣସି ଯୋଦ୍ଧା ମୃତ୍ୟୁବରଣ କରିବା ପରେ ସଂଧ୍ୟାରେ ପାଣ୍ଡବମାନେ ଶୋକ ପାଳନ କରୁଥିଲେ ଏବଂ କୌରବ ପକ୍ଷରେ ଥିବା ସେମାନଙ୍କ ସଂପର୍କୀୟମାନଙ୍କ ସହ ମିଳାମିଶା କରୁଥିଲେ । କାରଣ ସୂର୍ଯ୍ୟାସ୍ତ ପରେ ସେତେବେଳେ ଯୋଦ୍ଧାମାନେ ଯୁଦ୍ଧ ନକରିବା ଏକ ପରମ୍ପରା ଭାବେ ଗ୍ରହଣ କରାଯାଇଥିଲା । ସେମାନେ ନିଜର ସ୍ୱାର୍ଥ ପାଇଁ ନିଜ ବିବେକକୁ ବଳି ଦେଉନଥିଲେ । ସ୍ୱେଡ଼େନବର୍ଗଙ୍କ ଭାଷାରେ : ମଣିଷ ଭିତରେ ଥିବା ବିବେକ ହିଁ ଭଗବାନଙ୍କ ଉପସ୍ଥିତି ଜାହିର କରେ ।' ଆଜିର ମଣିଷ ପାଇଁ ଏହା ନିଶ୍ଚିତ ଭାବେ ଗୋଟାଏ ହାସ୍ୟାସ୍ପଦ ଘଟଣା । କାରଣ ଭଗବାନ ଅନେକ ଦିନରୁ ମଣିଷ ମନରୁ ବିଦାୟ ନେଇସାରିଲେଣି । ଅନ୍ତତଃ ତାହାହିଁ ମନେହେଉଛି । ତାହା ନ ହୋଇଥିଲେ ହେନେରି ଆଡାମ୍ସ କହିନଥାନ୍ତେ : ନୈତିକତା ହେଉଛି ଏକାନ୍ତ ବ୍ୟକ୍ତିଗତ ତଥା ବ୍ୟୟବହୁଳ ବିକାସ ।'

ନୈତିକତା ସଂପର୍କରେ ହାଉଲକ୍ ଏଲିସ୍ ତାଙ୍କ 'ଡ୍ୟାନ୍ସ ଅଫ୍ ଲାଇଫ୍' ପୁସ୍ତକରେ ଲେଖିଛନ୍ତି : ଆମେ ଯାହାକୁ ନୀତିକଥା କହିଥାଉ ତାହା ସରଳ ଭାବରେ ଆଦେଶନାମାର

ଅନ୍ଧାନୁକରଣ ମାତ୍ର' । (What we call morals is simply blind obedience towards of Command)

ଠିକ୍ ସେଇପରି ରାଜନୀତିଜ୍ଞ ଏବଂ ସେମାନଙ୍କ ସଂଗଠନ ସଂପର୍କରେ ଯାହା କୁହାଯାଇଛି ସେଥିରୁ ଦୁଇଟି ଉଦାହରଣ ଏଠି ଉଦ୍ଧାର କରିବି । ପ୍ରଥମଟି ହେଲା : ରାଜନୈତିକ ସଂସ୍ଥାଗୁଡ଼ିକ ନିଜ ନିଜର ମିଥ୍ୟାଚାର ଯୋଗୁଁ ମୃତ୍ୟୁବରଣ କରନ୍ତି । (The Political parties die at last of swallowing their own lies) ଏବଂ ଶେଷଟି ହେଉଛି : ତୁମେ ରାଜନୀତିକୁ ଧନ୍ଦା ଭାବେ ଗ୍ରହଣ କରି ଏକାସାଙ୍ଗରେ ସାଧୁ ରହିପାରିବନି (You cannot adopt politics as a profession and remain honest.)

ଅଧିକାଂଶ ସମୟରେ ମନେହୁଏ ଆମ ରାଜନୈତିକ ନେତୃବର୍ଗ ଏଇ କଥାଟିକୁ ବିସ୍ମରଣ ହେଇଛନ୍ତି । ବିବେକର ମୃତ୍ୟୁ ଯୋଗୁଁ ଏବେ ପୁନଶ୍ଚ ଲୋକସଭା ନିର୍ବାଚନ ହୋଇ ରାଜକୋଷରୁ ବାରଶହ କୋଟି ଟଙ୍କା ଖର୍ଚ୍ଚ ହେବା ସହ ଭାରତୀୟମାନଙ୍କ ନିର୍ଯ୍ୟାତନାକୁ ବହୁଗୁଣିତ କରିଛି, ତାହାହିଁ ବିଡମ୍ବନା ।



# ହସିବା ସପକ୍ଷରେ ଓକିଲାତି

**ଆ**କବରଙ୍କ ରାଜସଭାରେ ବୀରବଲଙ୍କ ଚତୁରତା ସମ୍ପର୍କରେ ଆମେ ଅନେକ କାହାଣୀ ସବୁ ପଢ଼ିଛୁ । ଥରେ ବୀରବଲଙ୍କୁ ଅପମାନିତ କରିବା ପାଇଁ ଯୋଜନା କରାଗଲା ଓ ଏକ ଶହ ପ୍ରଶ୍ନ ପଚାରି ତାଙ୍କୁ ବିବ୍ରତ କରିବା ଲାଗି ଗୁପ୍ତରେ ଆୟୋଜନ ହେଲା । ରାଜସଭାର ଜଣେ ବିଦ୍ୱାନ ପ୍ରଶ୍ନ କଲେ ବୀରବଲଙ୍କୁ : ''ଆପଣଙ୍କୁ ଶହେଟି ସହଜ ପ୍ରଶ୍ନ ପଚାରିବୁ ନା ଗୋଟିଏ କଠିନ ପ୍ରଶ୍ନ ? ଆପଣ କେଉଁଟି ପସନ୍ଦ କରିବେ ?''

:''ଗୋଟିଏ କଠିନ ପ୍ରଶ୍ନ ।'' ସହସା ଉତ୍ତର ମିଳିଲା । ପ୍ରଶ୍ନକର୍ତ୍ତା ସଙ୍ଗେ ସଙ୍ଗେ ପଚାରିଲେ : ''କହି ପାରିବେ, ଅଣ୍ଡା ଆଗ ନା କୁକୁଡ଼ା ଆଗ ?''

:'' କୁକୁଡ଼ା ଆଗ ।'' ବୀରବଲ କହିଲେ ।

: ''କିନ୍ତୁ ବିନା ଅଣ୍ଡାରେ କୁକୁଡ଼ା ହେବା ତ ସମ୍ଭବ ନୁହେଁ । ଆପଣ ୟା'ର କ'ଣ ଉତ୍ତର ଦେବେ ?'' ପ୍ରଶ୍ନକର୍ତ୍ତା ଏଥର ତାଚ୍ଛଲ୍ୟ ସ୍ୱରରେ କହିଲେ ।

: ''ମାତ୍ର କଥା ଥିଲା, ମୁଁ ଗୋଟିଏ ପ୍ରଶ୍ନର ଉତ୍ତର ଦେବି, ଯାହା ଦେଇସାରିଛି ।'' ହସି ହସି କହିଲେ ବୀରବଲ । ସମବେତ ଶ୍ରୋତା ମହଲରେ ଖେଳିଗଲା ହସର ଗୁଞ୍ଜରଣ । ପ୍ରଶ୍ନକର୍ତ୍ତା ଏଥର ଫେରିଗଲେ ନିଜ ଆସନକୁ ।

ଓଡ଼ିଶାର ରାଜସଭାରେ ଅନୁରୂପ ଭାବେ କିମ୍ବଦନ୍ତୀ ପୁରୁଷ ଯଦୁମଣି ଜଣେ ଆଶୁକବି ଭାବେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କ ସମ୍ପର୍କରେ ଅନେକ କାହାଣୀ ଓ କିମ୍ବଦନ୍ତୀ ମଧ୍ୟ ଶୁଣାଯାଏ - ଯାହାର ଅର୍ଥ ହେଉଚି ଯଦୁମଣି ଜଣେ ହାସ୍ୟରସିକ ଥିଲେ ଏବଂ ନିଜ ଜ୍ଞାନ ଓ ବିଚକ୍ଷଣ ବୁଦ୍ଧି ଜରିଆରେ ସଭାସଦ୍‌ବର୍ଗଙ୍କୁ ଖୁସ୍ ରଖୁଥିଲେ । ପ୍ରାଚୀନ କାଳରେ ଏପରି ରାଜସଭାରେ ବିଦୂଷକ ରଖିବା ଏକ ସ୍ୱୀକୃତ ପରମ୍ପରା ଭାବେ ଚଳି ଆସୁଥିଲା ।

କାଳକ୍ରମେ ଏବେ କେବଳ ସାହିତ୍ୟରୁ ନୁହେଁ ସାମାଜିକ ଜୀବନରୁ ମଧ୍ୟ ହାସ୍ୟରସ କମି କମି ଆସୁଥିବାର ଲକ୍ଷ୍ୟ କରାଯାଉଛି । ଆଧୁନିକ ସଭ୍ୟତା ଆମକୁ ସୁଖ ଓ ସମୃଦ୍ଧି ଦେଇଛି ସତ, ମାତ୍ର ଆମର ଏକାନ୍ତ ହସି ପାରିବାର କ୍ଷମତାଟିକୁ ଅପହରଣ କରିନେଇଛି ବୋଲି ମନେହେଉଛି । ଠିକ୍ ସେଇ କାରଣ ଯୋଗୁଁ ଖଲିଲ୍ ଜିବ୍ରାନଙ୍କ ଉକ୍ତିଟି ମନେପଡେ ବାରମ୍ବାର : ''ଯେଉଁ ଗହ୍ୱରରୁ ଆମ ହସ ଉକୁଟେ, ସେଇ ଏକା ଗହ୍ୱରଟି ଆମର ଲୁହରେ

ଭରି ହେଇ ରହିଥାଏ ଅଧିକାଂଶ ସମୟରେ । ଆମ ଭିତରେ ଦୁଃଖ ଯେତେ ଗଭୀରତର ହୁଏ ତାହା ସେତେ ଅଧିକ ଆନନ୍ଦ ଆମ ପାଇଁ ରଖିପାରେ ।'' (That self-same well from which our laughter rises was often times filled with our tears. The deeper that sorrow carries into our being, the more joy it can contain.)

ମଣିଷର ଜୀବନ ଯଦି ଗୋଟେ ଦୀର୍ଘ ସର୍କସ ହୁଏ ତେବେ ସେ ନିଜେ ହି ସେ ଖେଳର ଜୋକର ବୋଲି ଧରିନେବାକୁ ହବ । ପ୍ରତିନିୟତ ମଣିଷ ଖୋଜୁଥାଏ ବିଦୂଷକଟିଏ ତା' ନିଜ ଭିତରେ । ହସିବା ପାଇଁ, ହସାଇବା ପାଇଁ । ଅଥଚ ଦୁଃସହ ଜୀବନରେ ହସର ସୁନାବ୍ୟା ନଦୀଟି ପରିଣତ ହେଇଆସୁଛି ଯେପରି ଏକ ମରୁଭୂମି । ହିସାବ କରି ଦେଖାଯାଇଛି । ଗୋଟିଏ ଶିଶୁ ଦିନକୁ ହାରାହାରି ତିନିଶହ ଥର ହସିପାରୁଥିବାବେଳେ ଜଣେ ବୟସ୍କ ବ୍ୟକ୍ତି ମାତ୍ର ସତର ଥର ହସୁଛନ୍ତି ହାରାହାରି । ସେଇଥି ପାଇଁ ତ ଶିଶୁଟି ଏତେ ଖୁସ୍ ମିଜାଜରେ ଥିବାବେଳେ ବୟସ୍କ ବ୍ୟକ୍ତିଙ୍କ ମୁଣ୍ଡ ଉପରେ ଲଦା ହେଇଥାଏ ଯେପରି ଦୁଃଖର ଏକ ପାହାଡ । ବାରମ୍ବାର ହସିବା ଅଭଦ୍ରାମି ଅଥବା ପିଲାଳିଆମି ବୋଲି ଆମକୁ ପିଲାଦିନରୁ ଶିଖାଇ ଦିଆଯାଇଛି । ଆଉ ସେଇଥି ପାଇଁ ଯୋଡା (Yoda) କହନ୍ତି : ''ତୁମେ ଯାହା ଶିଖିଚ ତାକୁ ଭୁଲି ଯିବାକୁ ହବ'' । (You must unlearn what you have learned)

ସୁନ୍ଦର ସ୍ୱାସ୍ଥ୍ୟ ବଜାୟ ରଖିବା ଓ କିଛି ରୋଗରୁ ଆରୋଗ୍ୟ ପାଇଁ ଏବେ ହସକୁ ଉପଚାର ଭାବେ ପ୍ରୟୋଗ କରାଯାଉଛି । ମାନସିକ ଦୁଶ୍ଚିନ୍ତା, ପାରିବାରିକ ତଥା ସାମାଜିକ ଲାଞ୍ଛନାଜନିତ ଦୁଃଖରୁ ନିଷ୍କୃତି ପାଇଁ ଏବେ ଲାଫିଙ୍ଗ କ୍ଲବମାନ ସ୍ଥାପନା କରାଯାଉଛି । ହସି ହସି ନିଜର ସ୍ନାୟବିକ ଅସାମଞ୍ଜସ୍ୟତାକୁ ନିୟନ୍ତ୍ରଣ କରିବାର ଏହା ଏକ ଉତ୍କୃଷ୍ଟ ପନ୍ଥା ହେଇଚି ଏବେ ।

କ୍ଷୁଣ୍ଣ ସମ୍ପର୍କକୁ ମଧ୍ୟ ସଜାଡି ଦେବାରେ ହସର ଭୂମିକା କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ସେଇଥିପାଇଁ ଥରେ ଭିକ୍ଟର ବର୍ଜ (Victor Borge) କହିଥିଲେ : ''ଦୁଇଟି ବ୍ୟକ୍ତିଙ୍କ ଭିତରେ ହସ ହେଉଚି ସବୁଠାରୁ ଅଳ୍ପ ଦୂର ।'' (Laughter is the shortest distance between two people.) ଏ ସବୁ ସତ୍ତ୍ୱେ ମାନସିକ ସ୍ତରରେ ହସର ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଚି, ତା' ହେଲା : ଏହା ମନର ରୁଦ୍ଧଦ୍ୱାର ଖୋଲିଦେବା ସହ ସୃଜନୀ ଶକ୍ତିର ଦିଗ୍‌ବଳୟକୁ ପ୍ରସାରିତ କରିଥାଏ, ଜୀବନର ସମସ୍ତ ଦୁଃଖ ଓ କ୍ଳେଶକୁ ସାମ୍ନା କରିବା ଲାଗି ଭରସା ଦିଏ, ହୃତସ୍ପନ୍ଦନ ଓ ରକ୍ତଚାପକୁ କମାଇବାରେ ସହାୟକ ହୁଏ, ମାନସିକ ବିପର୍ଯ୍ୟୟକୁ ଠିକ୍ ରାସ୍ତାକୁ ଆଣେ, ନିଃସଙ୍ଗପଣକୁ ଦୂରୀଭୂତ କରେ, ମଣିଷକୁ ହତାଶା ଓ ତଦ୍‌ଜନିତ ଆତ୍ମହତ୍ୟା କରିବା ଲାଗି ନେଉଥିବା ନିଷ୍ପତ୍ତିରୁ ନିବୃତ୍ତ ରହିବାକୁ ପ୍ରେରଣା ଦିଏ ଏବଂ ଏଣ୍ଡରଫିନ୍ (Endorphins) ନାମକ ରାସାୟନିକ ପଦାର୍ଥ ନିର୍ଗତ ହେବାରେ ସହାୟକ ହୁଏ; ଯାହା ମସ୍ତିଷ୍କ ଗ୍ରହଣ କରୁଥିବା ଯନ୍ତ୍ରଣା ସମ୍ବାଦ ସବୁକୁ ପ୍ରତିହତ କରିବାରେ ଛାଏଁ ଛାଏଁ ସାହାଯ୍ୟ କରେ ।

କେବଳ ବୈଜ୍ଞାନିକ ବିଶ୍ଳେଷଣ ନୁହେଁ, ହସର ଉପକାରିତା ଓ ଉପଯୋଗିତା ନେଇ ଆମ ପ୍ରାଚୀନ ସାହିତ୍ୟରେ ମଧ୍ୟ ଅନେକ ଉଦାହରଣ ରହିଚି । ଆଜିକୁ ଶହେଷୋଳ ବର୍ଷ ତଳେ ଅର୍ଥାତ ଅଠରଶହ ତେୟାଅଶୀ ମହିହାରେ କବି ଉଇଲ୍‌କକ୍ସ ତାଙ୍କ କବିତା 'ନୀରବତା' (Solitude)ରେ ହସ ସମ୍ପର୍କରେ ଯେଉଁ ମନ୍ତବ୍ୟ ଦେଇଥିଲେ ବାସ୍ତବିକ୍ ଆଜି ମଧ୍ୟ ତା'ର ପ୍ରାସଙ୍ଗିକତା ରହିଛି । କବିତାଟି ଏଠି ଉପସ୍ଥାପନାର ଅପେକ୍ଷା ରଖୁଚି : ହସିଦେଲେ ଦୁନିଆ ହସିବ ତୁମ ସାଥେ/କାନ୍ଦିଲେ ତୁମେ କାନ୍ଦୁଥିବ ନିରାଜନା/ ବୟସ୍କ ପୃଥିବୀ ଯାହା ଧାର୍ ଆଣେ ତାହାର ଆନନ୍ଦ/ଅଥଚ ବୁକେ ତା'ର ଅନେକ ଯାତନା । (Laugh and the world laughs with you,/ weep and you weep alone, For the sad old Earth must borrow it's mirth,/But has trouble enough of it's own)

ଏ ସବୁ କହିବାର ଏକମାତ୍ର ଉଦ୍ଦେଶ୍ୟ ହେଉଚି-ଆମକୁ ହସିବାକୁ ହବ ଓ ନିଜର ବୋକାମି ଅଥବା ଅଦ୍ଭୁତପଣିଆ ଆଡକୁ ଆଙ୍ଗୁଠି ଦେଖାଇ ମଣିଷକୁ ଖତେଇବାକୁ ପଡିବ । ସେଥିପାଇଁ ଯଥାର୍ଥରେ ଜଣେ କହିଥିଲେ : ''ନିଜ କହୁଣିକୁ ଲୁଚାଇପାରିବା ଭଳି ସବୁଠୁ ଉତ୍ତମ କାମଟିଏ ମଣିଷ ହିଁ କରିପାରିବ ।'' (One of the best things people can have up their sleeve is a good funny bone.)



# ଜିଭ

ଗତ କିଛିଦିନ ତଳେ ମୋର ଜଣେ ସହକର୍ମୀଙ୍କ ଚାକିରୀ କାଳ ପୂରିଗଲା, ପଞ୍ଚତ୍ରିଶ ବର୍ଷର ବନ୍ଧନରୁ ମୁକୁଳି ଯାଉଥିବାରୁ ତାଙ୍କୁ ଅବସରକାଳୀନ ବିଦାୟ ସମ୍ବର୍ଦ୍ଧନା ମଧ ଦିଆଗଲା । ଏଇଟା ଗୋଟେ ରୀତି । ଅବସର ନେଇଥିବା ବ୍ୟକ୍ତିଙ୍କର ଗୁଣାଗାନ କରିବା ହେଉଛି ଗୋଟେ ମାମୁଲି କଥା । ଠିକ୍ ଜଣକର ମୃତ୍ୟୁ ପରେ ଯେପରି ବ୍ୟକ୍ତିଟିର ଯଶଗାନ କରାଯାଏ ତାହାହିଁ ହେଲା ଏଠି । ବିଦାୟକାଳୀନ ଭାଷଣ ଦେବାବେଳେ ଅଧିକାଂଶ ସହକର୍ମୀ ତାଙ୍କୁ ଜଣେ ଅଜାତଶତ୍ରୁ ବୋଲି ଅଭିହିତ କଲେ । ବାସ୍ତବିକ୍ ସେଇଟା ସତକଥା ଥିଲା । କାରଣ ଚାକିରୀ ଅଥବା ସାମାଜିକ ଜୀବନରେ ଆମେ ପ୍ରାୟତଃ କିଛିକିଛି ଶତ୍ରୁ ଅର୍ଜନ କରିଥାଉ । ତା'ର କାରଣ ଯାହାହେଉନା କାହିଁକି, ଅବସର ନେବାର କିଛିଦିନ ପୂର୍ବରୁ 'ସେ କିପରି ଶତ୍ରୁହୀନ' ଜୀବନ ବିତାଇ ପାରୁଛନ୍ତି ବୋଲି ଏ ଲେଖକ ତାଙ୍କୁ ପଚାରିଥିଲା । ଉତ୍ତର ଦେବାକୁ ଯାଇ ସହକର୍ମୀ ବନ୍ଧୁ କେବଳ ତାଙ୍କ ଜିଭଟିକୁ କାଢ଼ି ଦେଖାଇ ଦେଲେ । ତାଙ୍କର ସାଂକେତିକ ଭାଷା ସେତେବେଳେ ସହଜରେ ବୁଝି ପାରି ନ ଥିଲି । ଭାବିଲି ସେ ମୋତେ ଥଟ୍ଟା କରୁଛନ୍ତି ।

ଏହାର କିଛିଦିନ ପରେ ରାଜ୍ୟସ୍ତରୀୟ ଏକ କର୍ମଶାଳାରେ ଯୋଗଦେବାରେ ସୁଯୋଗ ମିଳିଲା । ବିଭିନ୍ନ ବକ୍ତା ଏଇ ଅବସରରେ ଭାଷଣ ଦେବାରେ କାର୍ଯ୍ୟକ୍ରମ ଥିଲା । ଜଣେ ଗୋଟିଏ ଗପ କହିଲେ,ଗପ ନୁହେଁ ନିରୋଳା ସତ କଥା । କଥାଟି ଏଥର ଶୁଣନ୍ତୁ । ଇନ୍ଦିରା ଗାନ୍ଧିଙ୍କ ଶାସନ କାଳରେ ଟି. ଆଞ୍ଜୋୟା ଶ୍ରମ ବିଭାଗ ମନ୍ତ୍ରୀ ଭାବେ କାର୍ଯ୍ୟ କରୁଥା'ନ୍ତି । ଯା' ପୂର୍ବରୁ ଶ୍ରୀ ଆଞ୍ଜୋୟା ଆନ୍ଧ୍ର ପ୍ରଦେଶର ମୁଖ୍ୟମନ୍ତ୍ରୀ  ଭାବେ ଶାସନ କରି ସାରିଥା'ନ୍ତି । କେନ୍ଦ୍ର ଶ୍ରମମନ୍ତ୍ରୀ ଥିବା ବେଳେ ଜେନେଭାସ୍ଥିତ ଆନ୍ତର୍ଜାତିକ ଶ୍ରମ ସଂଗଠନର ଏକ ସମ୍ମିଳନୀରେ ଯୋଗ ଦେବାପାଇଁ ଶ୍ରୀ ଆଞ୍ଜୋଙ୍କୁ ଆମନ୍ତ୍ରଣ ଆସିଥାଏ । ଏହା ଏକ ସମ୍ମାନଜନକ ଘଟଣା ଭାବେ ପରିଗଣିତ ହେଉଥାଏ ସେତେବେଳେ । ମାତ୍ର ଶ୍ରୀ ଆଞ୍ଜୋଙ୍କର ଏକ ସଭାରେ ଯୋଗଦାନକୁ ଶ୍ରୀମତୀ ଗାନ୍ଧି ନାପସନ୍ଦ କରୁଥା'ନ୍ତି । ଶ୍ରମମନ୍ତ୍ରୀଙ୍କ ସହିତ ଯାଉଥିବା ଜଣେ ବରିଷ୍ଠ କର୍ମଚାରୀଙ୍କ ଭିତରୁ ଜଣକୁ ଡ଼ାକି ଶ୍ରୀମତୀ ତାଗିଦ୍ କଲେ,

: ତୁମେ ଶ୍ରମମନ୍ତ୍ରୀଙ୍କ ସହ ଜେନେଭା ସମ୍ମିଳନୀକୁ ଯାଉଛ । ସେଠି ଶ୍ରୀ ଆଞ୍ଜୋୟା ଯେପରି ପାଟି ନଖୋଲନ୍ତି ସେ ଦାୟିତ୍ୱ ତୁମର । ଶ୍ରୀମତୀ ଗାନ୍ଧିଙ୍କ ମନ୍ତବ୍ୟ ଶୁଣିବା ପରେ କର୍ମଚାରୀ ଜଣକ ପ୍ରମାଦ ଗଣିଲେ । ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ଶ୍ରୀ ଆଞ୍ଜୋୟା ନିଜ ବିଭାଗର ବରିଷ୍ଠ ଅଧିକାରୀଙ୍କ ସହିତ ଉକ୍ତ ସମ୍ମିଳନୀକୁ ଗଲେ । କିନ୍ତୁ ସେ ଯେପରି ପଦଟିଏ

ସୁଦ୍ଧା କହିନପାରିବେ ସେଥିଲାଗି ସର୍ବଦା ଚେଷ୍ଟିତ ଥା'ନ୍ତି ଉକ୍ତ କର୍ମଚାରୀ । ଶ୍ରୀମତୀ ଗାନ୍ଧିଙ୍କର ଏଇ ଜିଦ୍ ପଛରେ ଗୋଟିଏ କାରଣ ସ୍ପଷ୍ଟ ହୋଇ ସାରିଥାଏ । ତା ହେଲା-ଶ୍ରୀ ଆଞ୍ଜୟାଙ୍କ ଶିକ୍ଷାଗତ ଯୋଗ୍ୟତାର ଅଭାବ । ଆନ୍ତର୍ଜାତିକ ସ୍ତରରେ ଭାରତକୁ ଉପହସିତ ନକରିବାକୁ ସେ ଏଇ ପନ୍ଥାର ଆଶ୍ରୟ ନେଇଥିଲେ । ଜେନେଭା ସମ୍ମିଳନୀରେ ଦିନେ ଖୁବ୍ ସରଗରମ ଆଲୋଚନା ଚାଲିଥାଏ । ବିଷୟବସ୍ତୁ ଥିଲା- ପୃଥିବୀର ପ୍ରତି ଦେଶରେ ଶ୍ରମିକଟି ମୁଣ୍ଡରେ କେତେ ବୋଝ ନେବା ଦରକାର । ଏହାକୁ ଇଂରାଜୀରେ ସେମାନେ 'ହେଡ୍ ଲୋଡ୍' ବୋଲି ଅଭିହିତ କରିଥା'ନ୍ତି । ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଶ୍ରମ ବିଶେଷଜ୍ଞମାନେ ଏହା ଉପରେ ସରଗରମ ଆଲୋଚନା କରୁଥା'ନ୍ତି । ଶ୍ରୀ ଆଞ୍ଜୟା ଏ ଆଲୋଚନାରୁ କିଛି ବୁଝି ପାରୁ ନଥା'ନ୍ତି । ଫଳତଃ ସେ ତାଙ୍କ ସହ ଯାଇଥିବା ବରିଷ୍ଠ ସଚିବଙ୍କୁ ପଚାରିବାରୁ ସେ ତତ୍‌କ୍ଷଣାତ୍ ଶ୍ରୀ ଆଞ୍ଜୟାଙ୍କୁ ସଭାର ସବିଶେଷ ବିବରଣୀ କହିଲେ ।

କର୍ମଚାରୀଙ୍କ କଥା ଶୁଣି ହଠାତ୍ ଶ୍ରୀ ଆଞ୍ଜୟା ନିଜ ଆସନରୁ ଉଠି 'ମୁଁ କହିବି, ମୁଁ କହିବି' ବଡ଼ ପାଟିରେ କହିବା ଆରମ୍ଭ କଲେ । ଅଗତ୍ୟା ମଞ୍ଚାସୀନ ବିଶେଷଜ୍ଞମାନେ ତାଙ୍କୁ ସୁଯୋଗ ଦେଲେ କହିବାକୁ ।

ପରବର୍ତ୍ତୀ ସମୟରେ ଶ୍ରୀ ଆଞ୍ଜୟା ଉକ୍ତ ସମ୍ମିଳନୀରେ ଯୋଗ ଦେଇଥିବା ବିଶ୍ୱର ବିଭିନ୍ନ ପ୍ରତିନିଧିଙ୍କୁ ଯେଉଁ କଥା କହିଲେ, ସେଥିରେ ସେମାନେ କେବଳ ସ୍ତମ୍ଭୀଭୂତ ହୋଇନଥିଲେ ବରଂ ଶ୍ରୀ ଆଞ୍ଜୟାଙ୍କ ଦ୍ୱାରା ପ୍ରଦତ୍ତ ଭାଷଣ ଓ ହିସାବ ହିଁ ଜେନେଭା ଶ୍ରମ ସଂଗଠନ ଦ୍ୱାରା ସ୍ୱୀକୃତ ଓ ଅନୁସୃତ ହେଲା । ସେଦିନ ଉକ୍ତ ସମ୍ମିଳନୀରେ ଭାଷଣ ପ୍ରସଙ୍ଗରେ ଶ୍ରୀ ଆଞ୍ଜୟା ଯାହା କହିଲେ (ଅବଶ୍ୟ ତାଙ୍କୁ କହିବା ପାଇଁ ସୁଯୋଗ ଦେବାକୁ ଶେଷ ମୁହୂର୍ତ୍ତରେ ଶ୍ରୀମତୀ ଗାନ୍ଧୀଙ୍କ ଅନୁମତି ଦିଲ୍ଲୀରୁ ନିଆଯାଇଥିଲା ଉକ୍ତ ବରିଷ୍ଠ କର୍ମଚାରୀଙ୍କ ଦ୍ୱାରା) ତା'ର ସାରମର୍ମ ଏଠି ଉପସ୍ଥାପନା କରିବା ଉଚିତ ହେବ । ସେ କହିଲେ : ଏବେ ସିନା ମୁଁ ମନ୍ତ୍ରୀ ହୋଇଛି, ମାତ୍ର କିଶୋର ବୟସରେ ମୁଁ ଜଣେ ରେଳବାଇ କୁଲି ଭାବେ ମୋର ଜୀବନ ବିତାଇଛି । ଥରେ ପଇସା ଲୋଭରେ ଜଣେ ଯାତ୍ରୀଙ୍କର ମାତ୍ରାଧିକ ବୋଝ ମୁଣ୍ଡରେ ନେଇକରି ଯାଇଥିବାରୁ ମୁଁ ଝୁଣ୍ଟି ପଡ଼ିଲି ଓ ମୋର ଡ଼ାହାଣ ଗୋଡ଼ଟା ସେଥିଯୋଗୁଁ ମଧ୍ୟ ଭାଙ୍ଗିଗଲା । ଜଣେ ଶ୍ରମିକ ଖୁବ୍ ବେଶୀରେ ତା'ର ମୁଣ୍ଡରେ ଏକାଥରକେ କେତେ ବୋଝ ନେଇପାରିବ- ସେକଥା ମୋ'ଠାରୁ କିଏ ଅଧିକ ଜାଣେ ? ଆଜିବି ଜେନେଭା ଶ୍ରମ ସଂଗଠନ ଶ୍ରୀ ଆଞ୍ଜୟା ଦେଇଥିବା ସେଦିନର ପ୍ରସ୍ତାବକୁ ସମ୍ମାନର ସହ ଗ୍ରହଣ କରି ଆସୁଛି । ଅଲୋଚନା ସଭା ପରେ ଯେତେବେଳେ ଶ୍ରୀ ଆଞ୍ଜୟା ମଞ୍ଚ ତଳକୁ ଆସି ଅନ୍ୟ ଦେଶର ବିଶେଷଜ୍ଞ ଓ ମନ୍ତ୍ରୀମାନଙ୍କ ସହ ବସିଥା'ନ୍ତି, ସେତେବେଳେ ଭାଙ୍ଗି ଯାଇଥିବା ତାଙ୍କର ଡ଼ାହାଣ ଗୋଡ଼ଟିକୁ ବାଁ ଆଣ୍ଠୁରେ ରଖି କ୍ରମାଗତଃ ହଲାଉଥା'ନ୍ତି । ଏହାକୁ କେହି ଅସୌଜନ୍ୟ ବ୍ୟବହାର ବୋଲି ଆଖ୍ୟା ଦେବା ପୂର୍ବରୁ ଶ୍ରୀ

ଆଞ୍ଜୋୟା ହସିହସି ସେମାନଙ୍କୁ କହିଲେ : ଏଇପରି ଗୋଡ଼ଟିକୁ ବାରମ୍ବାର ହଲାଇବା ଦ୍ୱାରା ମୁଁ ମୋର ଅତୀତକୁ ସବୁବେଳେ ମନେ ପକାଉଛି । ଯଦିଓ ମୁଁ ଏବେ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ଦେଶର ଜଣେ ବରିଷ୍ଠ ମନ୍ତ୍ରୀ ଅଛି,ତାହା ମୋର ସ୍ଥାୟୀ ପରିଚୟ ନୁହେଁ, ବରଂ ମୁଁ ଗୋଟାଏ ରେଳବାଇ କୁଲି ଥିଲି ବୋଲି ତାହା ବାରମ୍ବାର ମୋତେ ମନେ ପକାଇ ଦିଏ ।''

ଶ୍ରୀ ଆଞ୍ଜୋୟାଙ୍କ ସେଦିନର ବ୍ୟବହାର ତାଙ୍କ ସମଗ୍ର ଜୀନ କାଳର ଅଭିଜ୍ଞତାର ନିର୍ଯାସ ଥିଲା । ମଣିଷର ଅଭିଜ୍ଞତା ଓ ତଦ୍‌ଜନିତ ଅନୁଭବ ହିଁ ତା'ର ବଞ୍ଚିବାର ବାଟ ତିଆରି କରିଥାଏ । ଖାସ୍ ସେଇଥିପାଇଁ ଅବସର ଗ୍ରହଣ କରିଥିବା ମୋର ସହକର୍ମୀ ଯେ କି ଲୋକପ୍ରିୟତାର ଶୀର୍ଷକରେ ପହଞ୍ଚି ସାରିଥିଲେ ଓ ମୋ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ତାଙ୍କ ଜିଭ ଦେଖାଇଲେ । ତାଙ୍କ କହିବାର ତାତ୍ପର୍ଯ୍ୟ ଥିଲା - ମଣିଷ ତା'ର ଜିଭ ଦ୍ୱାରା ହିଁ ଶତ୍ରୁତା ଅଥବା ବନ୍ଧୁତା କରିଥାଏ ନିଜେ । ସାରା ଜୀବନ ସେ ତାଙ୍କ ଜିଭଟିକୁ ନିଜ ଅକ୍ତିଆରରେ ରଖି ପାରିଛନ୍ତି, ଜିଭର ନିୟନ୍ତ୍ରଣରେ ସେ କେବେ ରହି ନାହାଁନ୍ତି । ଶବ୍ଦ ଶର ସଦୃଶ ଥରେ ଓଠରୁ ଖସିଗଲେ ଆଉ ଫେରିବାର ସମ୍ଭାବନା ନ ଥାଏ । ସେଇଥିପାଇଁ ତ ଫ୍ରାଙ୍କଲିନ୍ କହିଥିଲେ : ପାଦ ଥରେ ଖସିଗଲେ, ଯଥାଶିଘ୍ର ହୋଇଥାଏ ଭଲ/ଜିଭ ଥରେ ଖସିଗଲେ, ସହଜରେ ମିଳେନା ନିସ୍ତାର ।' (A slip of the foot, you may soon recover, but a slip of the tongue, you may never get over) ବାଇବେଲରେ ମଧ୍ୟ ଏକଥା ସ୍ପଷ୍ଟ କରିଦିଆ ଯାଇଛି : 'ଖରାପ କଥା କହିବାରୁ ତୁମର ଜିଭକୁ ଦୂରେଇ ରଖ ଏବଂ ଶଠତାପୂର୍ଣ୍ଣ ଭାଷା ବ୍ୟବହାରରୁ ତୁମ ଓଠକୁ ଦୂରେଇ ରଖ, (Keep thy tongue from evil, and thy lips from speaking guile) ସତରେ ଆଜି ଜିଭ ଲାଗି ଯେତେସବୁ ସମସ୍ୟା ଓ ଅବୁଝାମଣା ହିଁ ହୋଇଛି । ନୁହେଁକି ?



# ସୁଡ଼ଙ୍ଗ - ଯାତ୍ରୀ

**ଛା**ତ୍ରବାସର ଜୀବନ ସଂପର୍କରେ ଏବେ ଲେଖାଟିଏ ପଢ଼ିଲି । ଜଣେ ଅଧ୍ୟାପକ କିପରି ନିଜ ଇଛାରେ ତତ୍ତ୍ୱାବଧାରକର ଦାୟିତ୍ୱ ନେଇଛନ୍ତି ଗୋଟିଏ ଛାତ୍ରବାସର ଏବଂ ସେଠାର ଅନ୍ତେବାସୀଙ୍କ ସହ ମିଳାମିଶା ପରେ ଅନୁଭବ କରିଛନ୍ତି ଯେ ସବୁ ଛାତ୍ରଙ୍କ ଭିତରେ (ଦୁଷ୍ଟ ଓ ଶିଷ୍ଟ) ଗୋଟିଏ ନରମ ହୃଦୟ ରହିଛି । ପ୍ରତି ତତ୍ତ୍ୱାବଧାରକର ଦାୟିତ୍ୱ ଓ କର୍ତ୍ତବ୍ୟ ହେଉଛି ଯେ ନିଭୃତ ସ୍ଥାନରେ ପହଞ୍ଚିଯିବା, ମାତ୍ର ଖୁବ୍ କମ୍ ଶିକ୍ଷକ ଛାତ୍ରବତ୍ସଳ ହେବା ପାଇଁ ଇଛା କରନ୍ତି । ଏକଥା କେବଳ ଆଜି ନୁହେଁ, ପଚିଶି ବର୍ଷ ତଳେବି ଏ ଲେଖକ ଲକ୍ଷ୍ୟ କରିଛି । ପ୍ରତିଦିନ ଶିକ୍ଷକ ଓ ଛାତ୍ର ଭିତରେ ଅତିକମରେ ଇଞ୍ଚେ ଲେଖାଏଁ ବ୍ୟବଧାନ ସୃଷ୍ଟି ହେବାରେ ଲାଗିଛି । କିଏ ଠିକ୍ କିଏ ଭୁଲ୍- ଏକଥା କହିବା ଏତେ ସହଜ ବ୍ୟାପାର ନୁହେଁ । ତେବେ ନିଜ ସ୍ମୃତି-ପୁଞ୍ଜିରୁ କିଛି ବାଣ୍ଟିବା ଲାଗି ଏ ଲେଖାର ଆୟୋଜନ । ପ୍ରାୟ ପଚିଶି ବର୍ଷ ତଳେ ପୁରୀ ସମୁଦ୍ର କୂଳ ନିକଟରେ ଥିବା ଛାତ୍ରାବାସରେ ଅନ୍ତେବାସୀ ଭାବେ ରହିବାର ସୁଯୋଗ ମିଳିଥିଲା । ଛାତ୍ରାବାସଟିର ନାଁ 'ପାଥେର ପୁରୀ' କୁହାଯାଏ । ଉକ୍ତ କୋଠାଟିର ମାଲିକ ଥିଲେ ବିଶ୍ୱକବି ରବୀରନ୍ଦ୍ରନାଥ ଠାକୁର ଏବଂ ପରବର୍ତ୍ତୀ ସମୟରେ ଓଡ଼ିଶା ସରକାରଙ୍କୁ ଉକ୍ତ କୋଠାଟିକୁ ଦାନ କରିଥିଲେ ଯାହା ଏବେ ସାମନ୍ତ ଚନ୍ଦ୍ର ଶେଖର ମହାବିଦ୍ୟାଳୟର ଗୋଟିଏ ଛାତ୍ରବାସ ଭାବେ ବ୍ୟବହୃତ ହେଉଛି । ରବୀନ୍ଦ୍ରନାଥ ଏଇ ଘରଟିର ଉପରେ ବସି ସମୁଦ୍ରକୁ ଉପଭୋଗ କରିବା ସହ ସେଠାରେ 'ଗୀତାଞ୍ଜଳି'ର କିଛି ଅଂଶ ଲେଖିଥିଲେ ବୋଲି ସେତେବେଳେ କେତେକଙ୍କଠାରୁ ଏ ଲେଖକ ଶୁଣିଥିଲା । ଉଦ୍‌ବୁଦ୍ଧ ହେବା ଲାଗି କମ୍ ଖୋରାକ୍ ମିଳିନଥିଲା ସେଦିନ । ଐତିହାସିକ ସତ୍ୟତା ସଂପର୍କରେ ଜାଣିବା ଲାଗି ଏ ଲେଖକ ନିରୁତ୍ସାହିତ ।

ଦିନେ ଶରତ ଅପରାହ୍ଣର ଘଟଣା । ଗରିବ ଲୋକଟିଏ କାନ୍ଦି କାନ୍ଦି ଆସି ତା'ର ଦୁଃଖ ଜଣାଇଲା ହଷ୍ଟେଲ୍ ବାହାରେ ଠିଆ ହୋଇ ଗପ ଜମାଉ ଥିବା କିଛି ଅନ୍ତେବାସୀଙ୍କୁ । ତା'ର ଦୁଃଖର କାରଣ ଥିଲା ଅଳ୍ପ କିଛି ସମୟ ପୂର୍ବରୁ ବଡ଼ ଡାକ୍ତରଖାନାରେ ତା'ର ସ୍ତ୍ରୀର ମୃତ୍ୟୁ ହୋଇଯାଇଥିଲା । ମାତ୍ର ତା'ର ଶବ ସଂସ୍କାର ପାଇଁ ଲୋଡ଼ା ହେଉଥିବା କାଠ କିଣିବା ଲାଗି ତା' ପାଖରେ ପଇସାଟିଏ ନାହିଁ । ସେଇଥିପାଇଁ ଦ୍ୱାରଦ୍ୱାର ବୁଲି କାଠ ପାଇଁ ସେ ପଇସା ସଂଗହ କରୁଥିଲା । ତା'ର ଏତାଦୃଶ ବିପତ୍ତିରେ ସମବେଦନା ଜଣାଇ କିଛି ବନ୍ଧୁ ସଙ୍ଗେ ସଙ୍ଗେ ଚାନ୍ଦା ଆଦାୟ କଲେ ଏବଂ ତାକୁ ସେ ପଇସା ଦେବା ପରେ ଲୋକଟି ସମୁଦ୍ର ବେଳାଭୂଇଁରେ ପେଣ୍ଟକଟା ଆଡ଼କୁ ଚାଲିବା ଆରମ୍ଭ କରିଦେଲା । ଅକସ୍ମାତ୍ ଜଣେ ଛାତ୍ରବନ୍ଧୁ ସହର ଭିତରୁ

ଆସି ଖବର ଦେଲା ଯେ, ସେ ବର୍ତ୍ତମାନ ଡାକ୍ତରଖାନାରୁ ଫେରୁଛି ଏବଂ ସେଠାରେ କୌଣସି ମୃତ୍ୟୁ ଖବର ସେ ପାଇନାହିଁ ଏବଂ ଲୋକଟି ତାହା ମିଛ କହି ସମସ୍ତଙ୍କୁ ଠକିଛି । ଠକି ଯାଇଥିବା ଗ୍ଲାନିରେ କିଛି ଅନ୍ତେବାସୀ ତୁରନ୍ତ ଖସି ପଳାଇ ଯାଉଥିବା ଲୋକଟି ପଛରେ ଗୋଡ଼େଇଲେ ଓ ତାକୁ ଧରି ସଗର୍ବେ ହଷ୍ଟେଲ୍‌କୁ ଆଣିଲେ । ଏଇ ଦୁଃସାହସିକ ବିଜୟକୁ ସ୍ୱାଗତ କରିବା ପାଇଁ ତତ୍କାଳୀନ ଅଧକ୍ଷ ସ୍ୱର୍ଗତ ସତ୍ୟବାଦୀ ମିଶ୍ରଙ୍କୁ ଛାତ୍ରାବାସର ତତ୍ତ୍ୱାବଧାରକ ଆମନ୍ତ୍ରଣ କଲେ ଓ ନିଜର ପ୍ରାଞ୍ଜଳ ଭାଷାରେ ସ୍ୱର୍ଗତ ମିଶ୍ର ସେଦିନ ଛାତ୍ରାବାସର ଅନ୍ତେବାସୀମାନଙ୍କୁ ସେମାନଙ୍କର ସାହସିକତା ପାଇଁ ଅଭିନନ୍ଦନ ଜଣାଇଲେ ଓ ସେଇ ଠକ ଲୋକଟିକୁ ଅବିଳମ୍ୱେ ପୋଲିସ୍ ହାତରେ ପ୍ରତ୍ୟର୍ପଣ କରାଗଲା ।

ସେଇ ଛାତ୍ରାବାସଟିର ଅନ୍ତେବାସୀମାନେ ଜଣେ ମୁଖ୍ୟ ଓ ଅନ୍ୟଜଣେ ସହାୟକ ତତ୍ତ୍ୱାବଧାରକଙ୍କ ଆତ୍ମଗର୍ବ, ବଡ଼ିମା ଓ ଦୌରାତ୍ମ୍ୟର ଖୁବ୍ ଶିକାର ହୋଇଥଲେ ସେତେବେଳେ । ଘଟଣା ଏପରି ସ୍ତରକୁ ଯାଇଥିଲା ଯେ ଜଣେ ଛାତ୍ର ଉପର ମହଲାରେ ରହି ଅନ୍ଧାର ରାତିରେ ତଳେ ଠିଆ ହୋଇ ଗପ କରୁଥିବା ତତ୍ତ୍ୱାବଧାରକଙ୍କ ଉପରକୁ ନିଜ ପରିସ୍ରା ପାତ୍ରଟିଏ ଫୋପାଡ଼ି ଥିଲା । ପରବର୍ତ୍ତୀ ସମୟରେ ଉକ୍ତ ଛାତ୍ରଟି ଏବେ ଏକ ଘରୋଇ ମହାବିଦ୍ୟାଳୟର ଅଧକ୍ଷ ଅଛନ୍ତି ଏବଂ ଛାତ୍ରମାନଙ୍କୁ ଶିକ୍ଷାଦାନ କରିବାରେ ବ୍ୟସ୍ତ ଅଛନ୍ତି ।

ଭାରତର ଅଧିକାଂଶ ମହାବିଦ୍ୟାଳୟ ଅଥବା ବିଶ୍ୱ ବିଦ୍ୟାଳୟରେ ଯେ ଅନୁଶାସନ ନାହିଁ-ତା'ର ନଜିର୍ ଅମେ ପ୍ରାୟତଃ ଖବରକାଗଜ ପୃଷ୍ଠାମାନଙ୍କରୁ ପଢ଼ିଥାଉ । ଥରେ ଉତ୍କଳ ବିଶ୍ୱ ବିଦ୍ୟାଳୟର ଗୋଟିଏ ଛାତ୍ରାବାସର ତତ୍ତ୍ୱାବଧାରକ ଭାବେ ଦାୟିତ୍ୱ ତୁଲାଉଥା'ନ୍ତି ଗାନ୍ଧିକ ସ୍ୱର୍ଗତ କୃଷ୍ଣପ୍ରସାଦ ମିଶ୍ର । ଛାତ୍ରମାନଙ୍କ ପ୍ରକୋଷ୍ଠ ସବୁ ତଦାରଖ କରିବା ଫଳରେ କିଛି ଧନୀ ଓ ଉଚ୍ଚ ପାହ୍ୟା ଅମଲାଙ୍କ ପୁତ୍ର ତଥା ସଂପର୍କୀୟ ଯେଉଁମାନେ ଉକ୍ତ ଛାତ୍ରାବାସର ଯୋଗ୍ୟ ଅନ୍ତେବାସୀ ଥିଲେ ସେମାନେ ତାଙ୍କୁ ଉର୍ସନା କରି କହିଲେ : ଆପଣ ତତ୍ତ୍ୱାବଧାରକ ହେବାକୁ ଅଯୋଗ୍ୟ ।'

ସେମାନେଙ୍କ ଧମକରେ ଡରି ନଯାଇ ସ୍ୱର୍ଗତଃ ମିଶ୍ର ସଙ୍ଗେ ସଙ୍ଗେ ଉତ୍ତର ଦେଲେ :

: କେବଳ ତତ୍ତ୍ୱାବଧାରକ କାହିଁକି, ଅନେକ କ୍ଷେତ୍ରରେ ମୁଁ ଅଯୋଗ୍ୟ ।'

ଉକ୍ତ ଅନ୍ତେବାସୀମାନେ କିଛି ବୁଝି ନପାରି ଯେତେବେଳେ ତାଙ୍କ ଆଡ଼କୁ ବଲବଲ ହୋଇ ଚାହିଁ ରହିଲେ ସ୍ୱର୍ଗତ ମିଶ୍ର କହିଲେ,

: ବଜାରରେ ଗୁଣ୍ଡାମି କରିବା, ବଡ଼ମାନଙ୍କୁ ଅଭଦ୍ର ବ୍ୟବହାର ଦେଖାଇବା, ଝିଅମାନଙ୍କୁ ଧର୍ଷଣ କରିବା- ଏସବୁ ପାଇଁ ନିଶ୍ଚୟ ମୁଁ ଅଯୋଗ୍ୟ । ତା'ଛଡା ଆହୁରି ଅନେକ କ୍ଷେତ୍ରରେ

ମଧ ମୁଁ ଅଯୋଗ୍ୟ ।' ପ୍ରକାଶଥାଉକି, ସ୍ୱର୍ଗତଃ ମିଶ୍ରଙ୍କ କଥା ସରିବା ଆଗରୁ ଉକ୍ତ ଅନ୍ତେବାସୀମାନେ ସେ ସ୍ଥାନ ପରିତ୍ୟାଗ କରି ସାରିଥିଲେ । ଅବଶ୍ୟ ପରବର୍ତ୍ତୀ ସମୟରେ ସ୍ୱର୍ଗତଃ ମିଶ୍ର ବିଭକ୍ତ ହୋଇ ଉକ୍ତ ପଦବୀ ଓ ଦାୟିତ୍ୱରୁ ଅବ୍ୟାହତି ନେଇଥିଲେ ବୋଲି ଏ ଲେଖକକୁ କହିଛନ୍ତି ।

ଦୁଇ ଦଶନ୍ଧି ତଳେ ଏ ସବୁ ଘଟଣା ଯେତେବେଳେ ଘଟୁଥିଲା ଏବେ ତା'ଠାରୁ ଟିକେ ନିଶ୍ଚୟ ଅଧିକା ଘଟଣା ଘଟୁଥିବାରେ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ । ମୂଲ୍ୟବୋଧର ପତନ ପ୍ରତିନିୟତ ନିମ୍ନଗାମୀ । ଜରୁରୀକାଳୀନ ପରିସ୍ଥିତି ଜାରି ରହିଥିବା ବେଳେ ଯେତେବେଳେ ତା'ର ପ୍ରତିବାଦରେ ଏ ଲେଖକ ପତ୍ରିକାଟିଏ ପ୍ରକାଶ କରିଥିଲା, ପ୍ରଥମେ ପୋଲିସ୍‌କୁ ଖବର ଦେଇ ତୁରନ୍ତ ଏ ଲେଖକଙ୍କୁ ଗିରଫ କରିନେବାକୁ ପରାମର୍ଶ ଦେଇଥିଲେ ତତ୍କାଳୀନ ଅଧ୍ୟାପକ ତଥା ତତ୍ତ୍ୱାବଧାରକ, କାଳେ ତାଙ୍କ ପାଇଁ ଏହା ବିପଦ ସୃଷ୍ଟି କରିବ, ଏଇ ଆଶଙ୍କାରେ ।

ଏକଦା ଜଣେ ବିଶିଷ୍ଟ ଆଇନଜ୍ଞ କହିଥିଲେ ଯେତେବେଳେ କୌଣସି ଦେଶ ଜନ୍ମ ଲାଭ କରେ, ତା'ର ନେତୃବର୍ଗମାନେ ବିଭିନ୍ନ ଶିକ୍ଷାନୁଷ୍ଠାନ ତିଆରି କରନ୍ତି । ପରବର୍ତ୍ତୀ ସମୟରେ ସେଇ ଅନୁଷ୍ଠାନଗୁଡ଼ିକ ନେତା ତିଆରି କରନ୍ତି । ଯଦି ପ୍ରଶ୍ନ ଉଠେ ଆମ ଦେଶରେ ଆଗାମୀ ଦିନ ପାଇଁ କିଏ ନେତା ଅଛି ? ତେବେ ସ୍ୱତଃ ପ୍ରଶ୍ନ ଉଠିବ - କେଉଁଠି ଦେଶ ନିର୍ମାଣ ପାଇଁ ନେତା ସୃଷ୍ଟି କରିବା ଭଳି ଆମର ଅନୁଷ୍ଠାନ ଅଛି ? ସେ ଯଥାର୍ଥରେ କହିଥିଲେ- ପଶୁଙ୍କୁ ପ୍ରଶିକ୍ଷଣ ଦିଆଯାଇପାରେ ମାତ୍ର ମଣିଷକୁ ଶିକ୍ଷାଦାନ କରାଯାଇ ପାରିବ କେବଳ (Animals can be trained; only human beings can be educated) ଯେକୌଣସି ବ୍ୟକ୍ତିକୁ ଶିକ୍ଷାଦାନ କରାଯାଇପାରିବ, ମାତ୍ର ସେଥିପାଇଁ ଲୋଡ଼ା ସଂପୃକ୍ତି ଓ ମାନସିକତାରେ ପରିବର୍ତ୍ତନ, ଯାହା ବ୍ୟକ୍ତିର ଅନ୍ତରାତ୍ମାକୁ ଭେଦ କରିପାରିବ । ଅତୀତର ଗୁରୁ-ଶିଷ୍ୟ ପରମ୍ପରାକୁ ଅନୁଧ୍ୟାନ କଲେ, ଦୁଃଖ କରିବାକୁ ପଡ଼ିବ ଯେ ଆମେ ଏବେ ସୁଡ଼ଙ୍ଗ ଭିତରେ ଯାତ୍ରା କରୁଛୁ କେବଳ । ଆଶା ସୂର୍ଯ୍ୟାଲୋକକୁ ଭେଟିବୁ । ମାତ୍ର ଲାଗୁଛି-ସେ ଯାତ୍ରା ଯେପରି ଅସରନ୍ତି ଓ ଦୁଃଖ ଅସୁମାରୀ, ଦୀର୍ଘଶ୍ୱାସ ଏକମାତ୍ର ପୁଞ୍ଜି ।



# ଇନ୍ଦ୍ରଙ୍କ ହାତୀ

ଫ୍ରାନ୍ସର ରାଜା ଷୋଡଶ ଲୁଇଙ୍କୁ ଗାଦିଚ୍ୟୁତ କରାଯାଇ ବନ୍ଦୀ ଭାବେ ରଖାଗଲା ।ଯେଉଁମାନେ ଏଇ ଷଡଯନ୍ତ୍ରର ମୁଖ୍ୟ ନାୟକ ଥିଲେ ସେମାନେ ରାଜପୁତ୍ରଙ୍କୁ ମଧ୍ୟ ଅପହରଣ କରିନେଲେ । ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଯଦି ସେମାନେ ରାଜପୁତ୍ରଙ୍କ ନୈତିକତାକୁ ହତ୍ୟା କରି ପାରନ୍ତି, ତାହା ସେମାନଙ୍କ ପାଇଁ ଏକ ବିରାଟ ବିଜୟ ହେବ । ନୈତିକତାର ମୃତ୍ୟୁ ପରେ ରାଜପୁତ୍ର କେବେ ବି ତାଙ୍କ ପିତାଙ୍କ ଠାରୁ ଛଡାଇ ନିଆଯାଇଥିବା ରାଜସିଂହାସନ ପାଇଁ ଯେପରି ଭବିଷ୍ୟତରେ ଲାଳାୟିତ ନ ହୁଅନ୍ତି, ଷଡଯନ୍ତ୍ରକାରୀମାନେ ସେଥିପାଇଁ ସୁନ୍ଦର ପରିକଳ୍ପନା ମଧ୍ୟ କରିଥିଲେ ।

ସେମାନଙ୍କ ପରିକଳ୍ପିତ ଯୋଜନାନୁଯାୟୀ ରାଜପୁତ୍ରଙ୍କୁ ଏକ ନିର୍ଜନ ସ୍ଥାନକୁ ନିଆଗଲା । ସେଠାରେ ତାଙ୍କୁ ସବୁଠାରୁ ସ୍ୱାଦିଷ୍ଟ ଭୋଜନ ପରିବେଷଣ କରାଗଲା । ଯଦ୍ୱାରା ଜଣେ ବ୍ୟକ୍ତି ଅକ୍ଲେଶରେ ଉକ୍ତ ଖାଦ୍ୟ ସାମଗ୍ରୀର ମୋହରେ ଆବିଷ୍ଟ ହୋଇରହିବ । ଅନୁରୂପ ଭାବେ ଉକ୍ତ ଷଡ଼ଯନ୍ତ୍ରକାରୀମାନେ ତାଙ୍କୁ ଅଶ୍ଳୀଳ ଭାଷା, କାମୋଦ୍ଦୀପକ ନାରୀ, ଅବିଶ୍ୱାସ ଓ ଅସମ୍ମାନ ଆଦି ଘୃଣ୍ୟ ପରିବେଶରେ ବାରମ୍ବାର ରଖିଲେ । ଏକମାତ୍ର ଉଦ୍ଦେଶ୍ୟ ଥିଲା, ଏହାଦ୍ୱାରା ରାଜପୁତ୍ର ନୈତିକ ସ୍ତରରେ ଏତେ ତଳକୁ ଖସିଯିବେ ଯେ,ଯେଉଁଠାରୁ ଆଉ ଫେରିବାର ଇଚ୍ଛା ଟିକକ ନଥିବ । ପ୍ରାୟ ଛ'ମାସ ଧରି କ୍ରମାଗତ ଏଇପରି କରିବା ପରେ ରାଜପୁତ୍ରଙ୍କ ଚରିତ୍ରରେ କୌଣସି ଅଧୋଗତି ଦେଖାଗଲା ନାହିଁ । ଅତ୍ୟନ୍ତ ଉତ୍ସୁକ ହୋଇ ଜଣେ ତାଙ୍କୁ ପ୍ରଶ୍ନ କଲେ- କାହିଁକି ରାଜପୁତ୍ର ଏତେ ସବୁ ସୁନ୍ଦର ପଦାର୍ଥର ମୋହରେ ପଡୁନାହାନ୍ତି । କାରଣ ଏ ସବୁ ତାଙ୍କୁ ଅନେକ ସୁଖ, ଆନନ୍ଦ ଓ କାମନାର ସନ୍ତୋଷ ଦେଇ ପାରିଥାନ୍ତା । କିନ୍ତୁ ନିର୍ଭୀକ କିଶୋର ରାଜପୁତ୍ରଙ୍କ ଉତ୍ତର ସେଦିନ ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରି ଦେଇଥିଲା, ''ତୁମେ ଯାହା ଚାହଁ, ମୁଁ ତାହା କରି ପାରିବି ନାହିଁ କାରଣ ମୁଁ ଜନ୍ମ ହେଇଚି କେବଳ ରାଜା ହେବା ପାଇଁ ଏବଂ ଏହା ରାଜାର କାମ ନୁହେଁ ।''

ଦିନେ ସେ ରାଜା ହେବେ ଏଇପରି ଏକଚିତ୍ର ମାନସିକ ସ୍ତରରେ ଆଙ୍କିଥିଲେ ନିଜର । ପ୍ରତି ମଣିଷ ସ୍ୱପ୍ନରେ ନିଜର ଛବି ଆଙ୍କିବାରେ ଜଣେ ଓସ୍ତାଦ୍ ଶିଳ୍ପୀ । ତା'ର କଳ୍ପନା ଶକ୍ତି ବି ତାକୁ ଅନେକାଂଶରେ ସାହାଯ୍ୟ କରିଥାଏ । ଯେତେ ସବୁ ବୈଜ୍ଞାନିକ ଉଦ୍ଭାବକ, ସେ ସବୁ ପଛରେ ଲୁଚି ରହିଚି କଳ୍ପନାର ଇମାରତ । ମଣିଷ ତା' ନିଜ କଳ୍ପନାର ସୀମା ଯେ ଲଂଘନ କରି ପାରିବ ନାହିଁ ଏସଂପର୍କରେ କଥାଟିଏ କହିବାର ଅବକାଶ ଏବେ ଆସିଚି ।

ସାରା ବିଶ୍ୱରେ ଏବେ ୱାଇଟୁକେ (Y2k) ସଂପର୍କୀୟ ଅଲୋଚନା ଓ ବିତର୍କ ଚାଲିଛି । କମ୍ପ୍ୟୁଟର ସଂପର୍କରେ ସାମାନ୍ୟତମ ଧାରଣା ଥିବା ବ୍ୟକ୍ତି ମଧ୍ୟ ଏଇ ସମସ୍ୟା ପ୍ରତି ଏବେ ଅବହିତ । ୱାଇଟୁକେ ହେଉଚି ଦୁଇ ହଜାର ମସିହାର ସଂକ୍ଷିପ୍ତୀକରଣ ମାତ୍ର । କମ୍ପ୍ୟୁଟରରେ ମସିହା ସୂଚନା ଦେବା ବେଳେ ଚାରିଗୋଟି ସଂଖ୍ୟା ପରିବର୍ତ୍ତେ ଦୁଇ ଗୋଟି ସଂଖ୍ୟା ବ୍ୟବହାର କରିବାର ପଦ୍ଧତି ରହିଥିବାରୁ ଏଇ ସମସ୍ୟାଟିର ଜନ୍ମ । ଏହା କୌଣସି ଭୂତାଣୁ କିମ୍ବା କୀଟଗ୍ରସ୍ତ ନୁହେଁ । କମ୍ପ୍ୟୁଟରର ପ୍ରାଥମିକ ପରିକଳ୍ପନାରେ ଏହି ତ୍ରୁଟି ରହଚି । ତେଣୁ ଯୋଗାଯୋଗ ସେବା ବ୍ୟବସାୟୀକ ସଂସ୍ଥାରେ ବ୍ୟବହୃତ କମ୍ପ୍ୟୁଟର ଏହାଦ୍ୱାରା କ୍ଷତିଗ୍ରସ୍ତ ହେବ ବୋଲି ଜଣାଯାଏ । ଏଇ ସମସ୍ୟାର ଆଶୁ ସମାଧାନ ପାଇଁ ସମଗ୍ର ବିଶ୍ୱର କମ୍ପ୍ୟୁଟର ବିଶେଷଜ୍ଞମାନେ ଏବେ ଗବେଷଣାରତ ଅଛନ୍ତି ।

ତେବେ ଏଇଠି ସ୍ୱତଃ ମନକୁ ପ୍ରଶ୍ନଟି ଆସେ, ଯେଉଁ ବୈଜ୍ଞାନିକମାନେ ଏପରି ଏକ ସୁନ୍ଦର ଉଦ୍ଭାବନରେ ସାରା ବିଶ୍ୱରେ ପରିବର୍ତ୍ତନ ଆଣି ପାରିଛନ୍ତି, ସେମାନେ ଏତେ ଛୋଟ କଥାଟିକୁ ବିଚାର କରି ପାରିଲେ ନାହିଁ କିପରି ? ଠିକ୍ ସେଇ ପରି , ଯେତେବେଳେ ଉଦ୍‌ଜାନ ବୋମା ହିରୋସୀମା ଓ ନାଗାସାକି ସହରକୁ ବିଧ୍ୱସ୍ତ କରିଥିଲା ସେତେବେଳେ ଏଇ ବୋମାର ଉଦ୍ଭାବକମାନେ ଅନୁତାପ କରିଥିଲେ ଯେ, ସେମାନଙ୍କ ଉଦ୍ଭାବିତ ପଦାର୍ଥ ବିଶ୍ୱର କଲ୍ୟାଣରେ ନ ଆସି ଧ୍ୱଂସ ପାଇଁ ବ୍ୟବହୃତ ହେବ ବୋଲି କଳ୍ପନା କରି ନ ଥିଲେ । ମଣିଷ ସବୁବେଳେ ତା'ର ସମୟ ଓ ପରିବେଶ ଦ୍ୱାରା ପ୍ରଭାବିତ ହେବାକୁ ବାଧ୍ୟ । ତା'ର ଚିନ୍ତାର ଦିଗ୍‌ବଳୟ ଯେତେ ସୁଦୂରପ୍ରସାରୀ ହେଲେ ମଧ୍ୟ ଏହାର ମଧ୍ୟ ଏକ ସୀମା ଅଛି ।

ଯେଉଁମାନେ ଏ ସବୁକୁ ବିଚାରକୁ ନ ନେଇ ଅନ୍ୟର ଦୋଷ ଦୁର୍ବଳତା ସବୁବେଳେ ବାଛନ୍ତି ସେମାନଙ୍କୁ ଇଂରାଜୀରେ ସେଇ କବିତାଟି ଶୁଣାଇବାର ଆବଶ୍ୟକତା ଅଛି, ଯାହାର ମର୍ମାନୁବାଦ ହେଉଚି ''ତା'ର ଭଲ ଗୁଣ ପ୍ରତି ଦୟାକରି ଏବଂ ତା'ର ଭୁଲ ପ୍ରତି ଟିକେ ଆଖି ବୁଜିଦିଅ'' । (Be to her virtues very kind/Be to her faults a little blind.) ଏଠି ପ୍ରସଂଗକ୍ରମେ ମାର୍କସଙ୍କ କଥା ମନକୁ ଆସି ଯାଉଛି । ତାଙ୍କ ଭାଷାରେ - ମଣିଷ ତା'ର ଦୁଇ ଆଖିରେ ସାରା ବିଶ୍ୱକୁ ଦେଖି ପାରୁଛି ଅଥଚ ତା' ନାକ ଉପରେ ବସିଥିବା ମାଛିଟିକୁ ଦେଖି ପାରୁନି, ତାହାହିଁ ବିଡମ୍ବନା ! ହୁଏତ ସେଇ ପ୍ରବାହଟିକୁ ସମର୍ଥନ ଜଣାଇ ଆମମାନଙ୍କୁ ସାନ୍ତ୍ୱନା ଦିଆଗଲା 'ମଣିଷ ମାତ୍ରେ ହିଁ ଭୁଲ କରେ ।'

ଯେଉଁମାନେ କେବଳ ମୃଗତୃଷ୍ଣା ପରି ଏଇ ଭୁଲଟିକୁ ଧରିବା ପାଇଁ ଜୀବନ ସାରା କ୍ଲାନ୍ତ ହୋଇ ଧାଇଁଥାନ୍ତି ସେମାନଙ୍କୁ ଏଇ ଲୋକ ଗଳ୍ପଟି ଶୁଣାଇବା ଦରକାର । ଏହା ଉତ୍ତରପ୍ରଦେଶର ଲୋକକଥା ଭାବେ ବେଶ୍ ଲୋକପ୍ରିୟ ।

ଗୋଟିଏ ବଦ୍‌ରାଗୀ ସ୍ୱାମୀ ତା'ର ସ୍ତ୍ରୀକୁ କୌଣସି ନା କୌଣସି ଆଳ ଦେଖାଇ ତାକୁ ନିସ୍ତୁକ ମାଡ଼ ମାରୁଥିଲା ସବୁବେଳେ ଓ ଏଇପରି ତା' ସ୍ତ୍ରୀର ଜୀବନ ଦୁର୍ବିସହ ହୋଇ ପଡିଲା । କିଛିଦିନ ପରେ, ଦିନେ ସେଇ ସ୍ତ୍ରୀ ଲୋକଟିର ଭଉଣୀ ସେମାନଙ୍କ ଘରକୁ ବୁଲି ଆସିବା ବେଳେ ସ୍ତ୍ରୀଟି ଭଉଣୀକୁ ତା'ର ଦୁଃଖ ବଖାଣିବା ସହିତ ନିଜ ସ୍ୱାମୀକୁ ଛାଡପତ୍ର ଦେବାକୁ ଚିନ୍ତା କରିଥିବା କଥା କହିଲା ।

: ''ଏତେ ଜଲଦି ବ୍ୟସ୍ତ ହେଉଚୁ କିଆଁ ?'' ତା'ର ଭଉଣୀ କହିଲା ଏବଂ ନିଜ ଭଉଣୀକୁ ସ୍ୱାମୀମାନଙ୍କୁ କିପରି ବ୍ୟବହାର କରାଯିବ ସେ ସଂପର୍କରେ ଆଜି କହିବ ବୋଲି ଆଶ୍ୱାସନା ଦେଲା ।

ସବୁଦିନ ପରି, ସେ ରାନ୍ଧିବା ଠାରୁ ଆରମ୍ଭ କରି ଘରର ଯାବତୀୟ କାର୍ଯ୍ୟ କଲା ଏବଂ ସେଦିନ ନିଜ ଅଗଣାରେ ସ୍ୱାମୀ ପାଇଁ ଖଟିଆ ପକାଇ ତା' ଉପରେ ସଫା ଚାଦର ମଧ୍ୟ ଢ଼ାଙ୍କିଲା । ସନ୍ଧ୍ୟାରେ ସ୍ୱାମୀ କାମରୁ ଫେରିବା ପରେ ନିଜ ଭଉଣୀ ପ୍ରସ୍ତୁତ କରିଥିବା ଗରମ ତଥା ସ୍ୱାଦିଷ୍ଟ ଭୋଜନ ଦେଲା ।

: ପ୍ରତିଟି ପୁରୁଷ ହେଉଛନ୍ତି ଗୋଟେ ଗୋଟେ ମେଣ୍ଢା, ତୁ ତାକୁ ଭଲ ବ୍ୟବହାର ଦେଖାଇବା ଦରକାର । ଏବେ ଦେଖ୍ ସେ କିପରି ଶାନ୍ତିରେ ଶୋଇ ପଡ଼ିବ ।'' ଠିକ୍ ଏତିକି ତାର ଭଉଣୀ ଉପଦେଶ ଦେଇଛି ଅଗଣାରୁ ପାଟି ଶୁଣି ସ୍ତ୍ରୀ ଏଥର ତା'ର ସ୍ୱାମୀ ପାଖକୁ ଗଲା ।

: ''ଉପରେ ସେଇ ଯେଉଁ ଧଳା ରାସ୍ତା ପରି ଦେଖାଯାଉଛି ସେଇଟା କ'ଣ ?'' ଖଟ ଉପରେ ଶୋଇ ରହି ଆକାଶକୁ ଆଙ୍ଗୁଠି ଦେଖାଇ ପୁରୁଷଟି ତା'ର ସ୍ତ୍ରୀକୁ ପଚାରିଲା ।

''ଓ, ସେଇଟା ତ ଗୋଟେ ଛାୟା ପଥ ।'' ସ୍ତ୍ରୀ ଏଥର ଖୁସିରେ କହିଲା ତା'ର ସ୍ୱମୀକୁ ''ଆଇ ମା'ଠାରୁ ମୁଁ ପିଲାଦିନେ ଶୁଣିଚି ଏଇ ଛାୟାପଥ ଦେଇ ଇନ୍ଦ୍ର ଦେବ ପ୍ରତିଟି ରାତିରେ ହାତୀ ଉପରେ ବସି ନଦୀକୁ ଯାଆନ୍ତି ।'' ପୁରୁଷଟି ଏଥର ଚିହିଁକି ଉଠିଲା ଏବଂ ରାଗରେ କହିଲା ''କଣ କହିଲୁ, ହାତୀ ଏଇବାଟ ଦେଇ ଯିବ ଖୋଜ ପକେଇ, ଆଉତୁ ଜାଣି ଜାଣି ମୋ ଖଟିଆ ଠିକ୍ ତା' ତଳକୁ ପକେଇଛୁ ।'' କହୁ କହୁ ନିସ୍ତୁକ ମାଡ ମାରିଲା ତା'ସ୍ତ୍ରୀକୁ ।

ଏଠି କହିବା ଅବଶ୍ୟ ନିଷ୍ପ୍ରୟୋଜନ ଯେ ଯେଉଁମାନେ ଅନ୍ୟର ତ୍ରୁଟି ଦେଖିବେ ବୋଲି ମୁଣ୍ଡରେ ପାଗ ଭିଡ଼ି ବସିଥାନ୍ତି ସେମାନଙ୍କ ପାଇଁ ଇନ୍ଦ୍ରଙ୍କ ହାତୀ ଗୋଟେ ବାହାନା ମାତ୍ର ।



# ମଧ୍ୟବୟସ୍କା ପତ୍ନୀ

ଟେଲିଭିଜନ୍‌ର ଉଦ୍ଭାବନ ପରେ ସବୁରି ମନରେ ଆଶଙ୍କା ହୋଇଥିଲା, ଏଣିକି ରେଡ଼ିଓ ଯୁଗର ଅବସାନ ଘଟିଲା । ଭାବିବା ମଧ୍ୟ ସ୍ୱାଭାବିକ୍ । ସେତେବେଳକୁ ରେଡ଼ିଓର ଆୟୁଷ ଥିଲା ମାତ୍ର ଅଠଚାଳିଶି ବର୍ଷ । ୧୯୪୪ ମସିହାରେ ଟେଲିଭିଜନ୍ ଉଦ୍ଭାବନ ହୋଇଥିଲା । ସେବେଠୁ 'ରେଡିଓ'ର ମୃତ୍ୟୁ ଘଣ୍ଟା ବାଜିବା ଆରମ୍ଭ ହେଲା । ସହରାଞ୍ଚଳରେ ଜନ୍ମ ପରଠୁ ଟିଭି ଦେଖୁଥିବା କିଶୋରମାନଙ୍କ ପାଇଁ 'ରେଡ଼ିଓ' ଗୋଟେ ପ୍ରାଚୀନ କାଳର ଦୁଷ୍ପ୍ରାପ୍ୟ ଦ୍ରବ୍ୟ ଏବେ ।

ଅର୍ଥନୈତିକ ଦୃଷ୍ଟିକୋଣରୁ ଦୁର୍ବଳ, ଅନଗ୍ରସର ଅଞ୍ଚଳମାନଙ୍କ ପାଇଁ 'ରେଡ଼ିଓ' ତଥାପି ଗୁରୁତ୍ୱପୂର୍ଣ୍ଣ ଗଣମାଧ୍ୟମ ହୋଇ ରହିଛି । ଟେଲିଭିଜନ୍‌ରେ ବି କମ୍ ପ୍ରତିଯୋଗିତାର ଅବକାଶ ନାହିଁ । ଭିନ୍ନ ଭିନ୍ନ ଚ୍ୟାନେଲ୍ ସୃଷ୍ଟି ଯୋଗୁଁ ଏବେ ଦର୍ଶକମାନଙ୍କୁ ଆକୃଷ୍ଟ କରିବା ଲାଗି ପ୍ରତିଦିନ ନୂଆନୂଆ ଫନ୍ଦି ଫିକରର ସୃଷ୍ଟି । ଗୋଟାଏ କଥା ସ୍ପଷ୍ଟ ହେଉଛି ବେଳକୁ ବେଳ : 'ଯିଏ ଜିତିବ ଏ କୁରୁକ୍ଷେତ୍ରରେ, ସେ ହିଁ କେବଳ ରାଜତ୍ୱ କରିବ ।'

ବିଜ୍ଞାନର ଜୟଯାତ୍ରା ସହ ଅର୍ଥନୈତିକ ବ୍ୟବସ୍ଥାରେ ଉଦାରୀକରଣ, ପରିସ୍ଥିତିକୁ ଖୁବ୍ ଜଟିଳ କରିଦେଇଛି ଏବେ । ଭୂମଣ୍ଡଳୀକରଣର ଦଂଶନର ଶିକାର ହେଇଛି 'ରେଡ଼ିଓ' ଗଣମାଧ୍ୟମ ।

ମାତ୍ର ଏପରି ଏକ ଚ୍ୟାଲେଞ୍ଜକୁ ମୁକାବିଲା କରିବାରେ ଆମର ଏକଦା ଲୋକପ୍ରିୟ ଏଇ ଗଣମାଧ୍ୟମ କି ପ୍ରକାରର ପଦକ୍ଷେପ ନେଇଛି, ତାହାହିଁ ଆଜିର ମୁଖ୍ୟ ପ୍ରଶ୍ନ । ଭାରତର ଏଇ ଗଣମାଧ୍ୟମଟି 'ଆକାଶବାଣୀ' ନାମରେ ପରିଚିତ, ଯାହାକୁ ଇଂରାଜୀରେ 'ଅଲ୍ ଇଣ୍ଡିଆ ରେଡ଼ିଓ' କୁହାଯାଏ । ଏହା ସଂପୂର୍ଣ୍ଣ ଭାବେ ଏକ ସରକାରୀ ସଂସ୍ଥା ଏବଂ କେନ୍ଦ୍ର ସରକାରଙ୍କ ଅଧୀନରେ ରହିଛି ।

ସରକାରଙ୍କ ଶାସନ ବ୍ୟବସ୍ଥାର ପ୍ରଚାର ଓ ପ୍ରଶସ୍ତି ଗାନ କରିବା ଏଇ ସଂସ୍ଥାର ପ୍ରମୁଖ କର୍ତ୍ତବ୍ୟ ଥିଲା ଏକ ସମୟରେ । କାଳକ୍ରମେ (ସମ୍ଭବତଃ ବିଶ୍ୱନାଥ ପ୍ରତାପ ସିଂହଙ୍କ ପ୍ରଧାନମନ୍ତ୍ରୀତ୍ୱ ସମୟରେ) ଏପରି ଆଚରଣରେ କିଛିଟା ପରିବର୍ତ୍ତନ ଅଣାଯାଇଥିଲା । ସରକାରଙ୍କ ବିଫଳତାକୁ ସମାଲୋଚନା କରିବାର ଅଧିକାର ମଧ୍ୟ ଏଇ ସଂସ୍ଥାକୁ ଦିଆଗଲା, ଏବେ ଅବଶ୍ୟ ଅଧିକ କ୍ଷମତା ଦିଆଯାଇଛି ଅଲ୍ ଇଣ୍ଡିଆ ରେଡ଼ିଓକୁ ।

ଅର୍ଥନୈତିକ ଭୂମଣ୍ଡଳୀକରଣ ଏବଂ ଏହାର ପ୍ରଭାବରେ ସବୁଠୁ ବେଶୀ ଆକ୍ରାନ୍ତ ହୋଇଛି

ଇଲେକ୍ଟ୍ରୋନିକ୍ ଗଣମାଧ୍ୟମ । ପର୍ଯ୍ୟାପ୍ତ ପରିମାଣର ପ୍ରାଇଭେଟ୍ ଚାନେଲ୍ ଓ ଏଥିରେ ସରକାରୀ କଟକଣାମୁକ୍ତ ବ୍ୟବସ୍ଥା ରହିବା ଦ୍ୱାରା ଦର୍ଶକମାନଙ୍କର ଏହା ଖୁବ୍ ପ୍ରିୟ ହୋଇପଡ଼ିଛି । ହେଲେ ରେଡ଼ିଓ କ'ଣ ସେଇ ନିଷିଦ୍ଧ ବଳୟ ଭିତରୁ ନିଜକୁ ମୁକ୍ତ କରିପାରିବ ନାହିଁ ?

ସେଇ ପଦକ୍ଷେପ ଧ୍ୱନିଟି ଏବେ ଶୁଣାଗଲାଣି । ବେଳକୁ ବେଳ ଏହା ନିକଟତର ହେବାରେ ଲାଗିଛି । ଅଲ୍ ଇଣ୍ଡିଆ ରେଡ଼ିଓ ଏବେ ପ୍ରସାରଭାରତୀରେ ରୂପାନ୍ତରିତ ହେଉଛି । ସେ ପ୍ରକ୍ରିୟାଟି ହୁଏତ ଅଳ୍ପ କେଇମାସ ଭିତରେ ସଂପୂର୍ଣ୍ଣ ହେବାରେ ସମ୍ଭାବନା ମଧ୍ୟ ରହିଛି । ଫଳତଃ ପଇଁଚାଳିଶି ହଜାର କର୍ମଚାରୀ ବିଶିଷ୍ଟ ଏଇ ସଂସ୍ଥାଟିରେ ଅନେକ ପରିବର୍ତ୍ତନ ଆସିବାର ଆଶଙ୍କାକୁ ଏଡ଼ାଇ ଦିଆଯାଇନପାରେ । ଶୁଣାଯାଏ, ଜଣେ ହେଲେ କର୍ମଚାରୀ 'ଆକାଶବାଣୀ'ରୁ 'ପ୍ରସାର୍ ଭାରତୀ'କୁ ଯିବା ପାଇଁ ସମ୍ମତି ପ୍ରକାଶ କରୁନାହାଁନ୍ତି । କର୍ମଚାରୀମାନଙ୍କ ଉପରେ ମାନସିକ ଚାପ ମଧ୍ୟ ପ୍ରୟୋଗ କରାଯାଉଛି 'ପ୍ରସାର୍ ଭାରତୀ'ରେ ଯୋଗ ଦେବା ପାଇଁ ।

ଏହାର ଅନେକ କାରଣ ରହିଛି । କର୍ମଚାରୀମାନେ ନିଜକୁ ଖୁବ୍ ଅସହାୟ ମନେ କରୁଛନ୍ତି । ଅନେକ ସରକାରୀ ସୁବିଧାରୁ ବଞ୍ଚିତ ହେବା ସହ ଏହାର କର୍ମଚାରୀମାନେ ଘରଭଡ଼ା ରିହାତି, ଡାକ୍ତରୀ ସେବାରେ ଅନେକ ସୁବିଧା ଓ ଅନ୍ୟ ସୁଯୋଗରୁ ବଞ୍ଚିତ ହେବେ ବୋଲି ଆଶଙ୍କା କରୁଛନ୍ତି । କେବଳ ସେତିକି ନୁହେଁ, ଏହା ଏକ 'କର୍ପୋରେସନ୍' ଭାବେ ନାମିତ ହୋଇଥିବାରୁ ଜଣିକିଆ ମାଲିକାନାରେ ସଂସ୍ଥାଟି ପରିଚାଳିତ ହେବାର ସମ୍ଭାବନାକୁ ଏଡ଼ାଇ ଦିଆଯାଇନପାରେ ।

ଗତ ଜାନୁୟାରୀ ୨୬ ତାରିଖରେ ଗୁଜରାଟର 'ଭୁଜ୍' ସହରଟି ଭୂମିକମ୍ପ ଫଳରେ ଯେପରି ଭାବେ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା, ସେ ସମୟରେ ଆକାଶବାଣୀ 'ଭୁଜ୍' ଓ ଆକାଶବାଣୀ 'ରାଜକୋଟ୍' ପ୍ରତି ଦଶ ମିନିଟ୍‌ରେ ସେଠାକାର ଖବର ପ୍ରସାରିତ କରି ସମଗ୍ର ଭାରତ ତଥା ପୃଥିବୀବାସୀଙ୍କୁ ଜଣାଇବାରେ ସାହାଯ୍ୟ କରିଥିଲା । କେବଳ ସେତିକି ନୁହେଁ, ସେଠାକାର ଆହାତ ଲୋକଙ୍କ ସହ ପ୍ରତ୍ୟକ୍ଷ ସଂଯୋଗ ରଖିବା ସହ, ଜିଲ୍ଲା ପ୍ରଶାସନ ଓ ସରକାରୀ କର୍ତ୍ତୃପକ୍ଷଙ୍କ ସହ ଯୋଗସୂତ୍ର ସ୍ଥାପନ କରିବାରେ ଆକାଶବାଣୀ କେନ୍ଦ୍ର ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । କାରଣ, ଅନ୍ୟାନ୍ୟ ସମସ୍ତ 'ଗଣମାଧ୍ୟମ' ଅଚଳ ହୋଇଯାଇଥିଲା ସେଇ ସମୟରେ । ଅତୀତରେ ଯୁଦ୍ଧ ସମୟରେ 'ଆକାଶବାଣୀ'ର ଭୂମିକା ଅନୁରୂପ ଭାବେ ଥିଲା ସବୁଠୁ ବେଶୀ ଗୁରୁତ୍ୱପୂର୍ଣ୍ଣ ଓ ପ୍ରଶଂସନୀୟ ।

ଭାରତର ଶାସ୍ତ୍ରୀୟ ସଙ୍ଗୀତର ପ୍ରସାର ଓ ଚଳଚ୍ଚିତ୍ର ଗୀତକୁ ଲୋକପ୍ରିୟ କରିବାରେ 'ରେଡ଼ିଓ'ର ଭୂମିକା ବେଶ୍ ଫଳପ୍ରଦ ହୋଇଛି ଅତୀତରେ । କେବଳ ସେତିକି ନୁହେଁ ରେଡ଼ିଓରେ କୃଷି କାର୍ଯ୍ୟକ୍ରମ ମାଧ୍ୟମରେ ହାଇବ୍ରିଡ୍ ଧାନ 'ଆଇ.ଆର୍. -୮'ର ଘନଘନ ପ୍ରଚାର ଓ ପ୍ରସାର

ଯୋଗୁଁ ଏକଦା ତାମିଲ୍‌ନାଡୁ ରାଜ୍ୟରେ ଶସ୍ୟ ବିପ୍ଳବର ସୂତ୍ରପାତ ହୋଇପାରିଥିଲା । ଏପରିକି 'ଆଇ.ଆର୍.-୮' ଧାନକୁ ଲୋକେ 'ରେଡ଼ିଓ ଧାନ' ବୋଲି କହୁଥିଲେ ।

ସପ୍ତାହ କାଳ ଧରି ଯେଉଁ ଅନୁନ୍ନତ ଗ୍ରାମାଞ୍ଚଳରେ ଖବରକାଗଜଟିଏ ପହଞ୍ଚି ପାରୁନଥିଲା, ସେ ସବୁ ଅଞ୍ଚଳରେ ତତ୍‌କ୍ଷଣାତ୍ ପହଞ୍ଚି ପାରିଥିଲା ମହାତ୍ମାଗାନ୍ଧିଙ୍କ ନିଧନ ତଥା ନେହେରୁଙ୍କ ମୃତ୍ୟୁ ସମ୍ବାଦ ।

ଦୁଃଖର କଥା, ଏବେ କେବଳ ସହରାଞ୍ଚଳ ନୁହେଁ, ଗ୍ରାମାଞ୍ଚଳରେ ମଧ୍ୟ ରେଡ଼ିଓର ଶ୍ରୋତା ଖୁବ୍ ଦ୍ରୁତ ଗତିରେ କମିବାରେ ଲାଗିଛି । ଯଦିଓ ସାରା ଭାରତରେ ୨୪ଟି ଭାଷା ଏବଂ ୧୪୬ଟି ଉପଭାଷାରେ 'ଆକାଶବାଣୀ'ର କାର୍ଯ୍ୟକ୍ରମ ପ୍ରସାରିତ ହେଉଛି ଏବଂ ଶତକଡ଼ା ୯୦ ଭାଗ ଅଞ୍ଚଳ ଏବଂ ୯୮.୮ ଭାଗ ଲୋକସଂଖ୍ୟା ପାଇଁ ଏହି ସୁବିଧା ଉପଲବ୍ଧ ହେଉଛି ।

ଏହା ନିଶ୍ଚିତ ଯେ ରେଡ଼ିଓର ଦୂରଦର୍ଶିତା ସମ୍ପର୍କରେ ନୀତି ନିର୍ଦ୍ଧାରଣ କରିବା ଲାଗି ଆମ ସରକାରୀ କଳର ରହିଛି ଉଦାସୀନତା । କୌଣସି କାର୍ଯ୍ୟକ୍ରମର ଏକାଧିକ ବାର ପ୍ରସାରଣ ଓ ନିମ୍ନମାନର କାର୍ଯ୍ୟକ୍ରମର ପ୍ରସ୍ତୁତି ମଧ୍ୟ ଅନେକ ସମୟରେ 'ରେଡ଼ିଓ'କୁ ଶ୍ରୋତାଙ୍କ ପାଖରୁ ଦୂରେଇ ନେଉଛି । ସେଥିପାଇଁ ଏହି ସଂସ୍ଥାର ଦାୟିତ୍ୱରେ ଥିବା ଅଧିକାରୀଙ୍କୁ ଆମେ ଦାୟୀ କରିପାରିବା । ପ୍ରସଙ୍ଗକ୍ରମେ ମନେପଡୁଛି ଘଟଣାଟି ।

କିଛି ମାସ ପୂର୍ବେ ଏ ଲେଖକ ଜଣେ ଅପରିଚିତ ବ୍ୟକ୍ତିଙ୍କଠାରୁ ଚିଠିଟିଏ ପାଇ ଆଶ୍ଚର୍ଯ୍ୟ ହୋଇଥିଲା । କାଣ ପତ୍ର ପ୍ରେରକ ଅନୁରୋଧ କରିଥିଲେ ଯେ କୌଣସି ଏକ ଆକାଶବାଣୀ କେନ୍ଦ୍ରର ଏକ ଚୁକ୍ତିନାମା ଏ ଲେଖକର ମାର୍ଫତ୍‌ରେ ଆସିବ, ଯାହାକୁ ପାଇବା ଲାଗି ଉକ୍ତ ପତ୍ର ପ୍ରେରକ ଅନୁରୋଧ କରିଥିଲେ । ଏଠି କହିବା ପ୍ରାସଙ୍ଗିକ ହେବ ଯେ ପତ୍ର ପ୍ରେରକ ଜଣକ ତାଙ୍କ ଆଞ୍ଚଳିକତା ଦୃଷ୍ଟିରୁ ଉକ୍ତ ଆକାଶବାଣୀ କେନ୍ଦ୍ରର କାର୍ଯ୍ୟକ୍ରମ କରିବା ଆଇନତଃ ନିଷେଧ ଥିଲା । ତେଣୁ ଏ ଲେଖକର ମାର୍ଫତ୍‌ରେ ଅକାଶବାଣୀର ଚୁକ୍ତିନାମାଟି ହସ୍ତଗତ କରିବାକୁ ଚାହୁଁଥିଲେ । ନିଜ ଅଞ୍ଚଳରେ ଥିବା ଅକାଶବାଣୀ କେନ୍ଦ୍ରରେ ହୁଏତ ନିଜକୁ ଅଯୋଗ୍ୟ ପ୍ରମାଣିତ କରିବା ପରେ ସେ ଏ ଲେଖକ ରହୁଥିବା ଅଞ୍ଚଳର ଆକାଶବାଣୀ କେନ୍ଦ୍ରର ଚୁକ୍ତିନାମା ପାଇବା ଲାଗି ଏ ପ୍ରକାର ବ୍ୟବସ୍ଥା କରିଥିଲେ । ସବୁଠୁ ଦୁଃଖର କଥା, ତାଙ୍କୁ ଏଇ ଅନୈତିକ କାର୍ଯ୍ୟଟି କରିବା ଲାଗି ସାହାଯ୍ୟ ଓ ପ୍ରେରଣା ଯୋଗାଇଥିଲେ ଅକାଶବାଣୀର ଜଣେ ଭୂତପୂର୍ବ କେନ୍ଦ୍ର ନିର୍ଦ୍ଦେଶକ । କାରଣ 'ଚୁକ୍ତିନାମା'ଟି ଉକ୍ତ ଅବସରପ୍ରାପ୍ତ କେନ୍ଦ୍ର ନିର୍ଦ୍ଦେଶକଙ୍କ ଠିକଣାରେ ପଠାଇ ଦେବାକୁ ପତ୍ର ପ୍ରେରକ ଅନୁରୋଧ କରିଥିଲେ । ନିମ୍ନମାନର ଶିଳ୍ପୀଙ୍କଠାରୁ ଉନ୍ନତ ରୁଚିର କାର୍ଯ୍ୟକ୍ରମ ଆଶା କରିବା ବୃଥା । ଏଥିଲାଗି କାହାକୁ ଦାୟୀ କରିବା ?

ଛଅବର୍ଷ ତଳେ ସୁପ୍ରିମକୋର୍ଟ ଏକ ଗୁରୁତ୍ୱପୂର୍ଣ୍ଣ ରାୟ ଦେଇ କହିଥିଲେ 'ରେଡ଼ିଓ' ପରି

ଜନହିତକାରୀ ସଂସ୍ଥାକୁ ସରକାରୀ ଅଥବା କୌଣସି ବ୍ୟକ୍ତିବିଶେଷଙ୍କ କର୍ତ୍ତୃତ୍ୱାଧୀନ ରଖାଯିବା ଅନୁଚିତ ।

ମାତ୍ର ସରକାରଙ୍କ ଉଦାସୀନତା ଦେଖି ଥରେ ବିଶିଷ୍ଟ ସମାଲୋଚିକା ଅମିତା ମଲ୍ଲିକ କହିଥିଲେ-'ଜଣେ ମଧ୍ୟବୟସ୍କା ପତ୍ନୀଙ୍କୁ ହତାଦର କରିବା ପରି ସରକାର 'ରେଡ଼ିଓ' ପ୍ରତି ଅବିଚାର କରୁଛନ୍ତି ଏବଂ ଟେଲିଭିଜନ୍‌କୁ ଜଣେ ଯୁବା ରକ୍ଷିତା ପରି ଗେହ୍ଲା କରୁଛନ୍ତି ।' ରକ୍ଷିତାର ପ୍ରେମ ସବୁବେଳେ ଆବିଳ । ସତରେ, ଦୁଃଖଦାୟକ ହେଲେବି ଘଟଣାଟି କେତେ ସତ !



" ମନୁ ଦାଶ କୃତ 'ଗୁଡ଼୍ଲିର ଜେଜେବାପା', ସମସାମୟିକ ଜନଜୀବନର ମନନ ଓ ଅନୁଶୀଳନ ଦୃଷ୍ଟିରୁ ନିଃସନ୍ଦେହରେ ଏକ ଅନବଦ୍ୟ ସୃଷ୍ଟି । ଯଦିଓ ଏହା ସମୟ ସ୍ରୋତରେ ଶୀର୍ଷକ ଧାରାବାହିକ ସ୍ତମ୍ଭର ଅଂଶବିଶେଷ ତଥାପି ଏହା ଆଦୌ ମନ୍ତବ୍ୟ ପ୍ରଧାନ ନୁହେଁ, ବରଂ ଅନ୍ତରଙ୍ଗ ଚିନ୍ତାଧାରା ଓ ନିର୍ବିକାର ଅନ୍ତର୍ଦୃଷ୍ଟିର ଏକ ବାର୍ତ୍ତାବହ ରୂପେ ଏହାର ଆତ୍ମପ୍ରକାଶ । "

- ବିଶ୍ୱଜିତ୍ ଦାସ



" ସ୍ପଷ୍ଟ ପ୍ରକାଶ ଭଙ୍ଗୀ, ଅନ୍ତରଙ୍ଗ କଥନ ଶୈଳୀ ଓ ଉନ୍ମୁକ୍ତ ମତ ପ୍ରଦାନ ହିଁ ମନୁ ଦାଶଙ୍କ ବିଶେଷତ୍ୱ । ସମସାମୟିକ ବାସ୍ତବତା ସମ୍ପର୍କରେ ଲେଖିଲାବେଳେ ସେ ଆଦୌ ଭୀରୁ କିମ୍ବା ପଳାୟନ ପନ୍ଥୀ ନୁହଁନ୍ତି । ତାଙ୍କର ବେସାଲିସ୍‌ପଣ ହିଁ ତାଙ୍କ ଦୃଷ୍ଟିଭଙ୍ଗୀର ସାର୍ଥକତା । "

- ଦେବପ୍ରସାଦ ଦାଶ